# ବୈକୁଣ୍ଠ ବିଶ୍ୱାଳ

## କିଛି ସ୍ମୃତି, କିଛି ଅନୁଭୂତି

ସମ୍ପାଦନା

ରବି ଦାଶ

ଚେତନା ବିଶ୍ୱାଳ



କାର୍ଗ

କାଉନ୍‌ସିଲ୍ ଅଫ୍ ଏବିଲିଟି ରିସର୍ଚ୍ଚ ଆଣ୍ଡ ଜେନେରେସନ୍

ଭୁବନେଶ୍ୱର

ବୈକୁଣ୍ଠ ବିଶ୍ୱାଳ
କିଛି ସ୍ମୃତି, କିଛି ଅନୁଭୂତି
ସମ୍ପାଦନା : ରବି ଦାଶ
ଚେତନା ବିଶ୍ୱାଳ

ପ୍ରକାଶନ କାଳ : ମେ ୨୯, ୨୦୦୬ ଅଷ୍ଟମ ଶ୍ରାଦ୍ଧ ଦିବସ

ପ୍ରକାଶକ :
କାଉନସିଲ୍ ଅଫ୍ ଏବିଲିଟୀ ରିସର୍ଚ୍ଚ ଆଣ୍ଡ ଜେନେରେସନ୍ (କାର୍ଗ)
ପ୍ଲଟ୍ ନମ୍ବର - ୪୩୫୭, ପାଣ୍ଡବ ନଗର, ରୋଡ଼୍ ନଂ- ୨
ଟଙ୍କପାଣି ରୋଡ଼୍, ଭୁବନେଶ୍ୱର - ୭୫୧ ୦୧୮
ଫୋନ୍ : (୦୬୭୪)୨୪୩୬୫୦୪

ମୁଦ୍ରଣ :
ଶିକ୍ଷା ପ୍ରକାଶନୀ
ଭୁବନେଶ୍ୱର - ୭୫୧ ୦୦୩
ଫୋନ୍ : (୦୬୭୪)୨୫୫୨୦୨୪

ସହଯୋଗ ରାଶି : ୨୫/- ଟଙ୍କା

**Baikuntha Biswal**
**Kichhi Smruti, Kichhi Anubhuti**
Edited by : **Rabi Dash**
**Chetana Biswal**

Date of Publication : **May 29, 2006**

Published by
**Council of Ability Research and Generation (CARG)**
4357, Pandav Nagar, Road-2
Tankapani Road, Bhubaneswar - 751 018
Phone : 0674 - 2436504
e-mail : carg@rediffmail.com

Printed at:
**Siksha Prakashani**
Bhubaneswar - 751 003
Phone : 0674 - 2552024

Contribution : 25/- only

# ସୂଚୀପତ୍ର

## ସମ୍ପାଦକୀୟ......

ବିଂଶ ଶତାବ୍ଦୀର ଷାଠିଏ ଦଶକ ଏକ ଝଡ଼ର ଦଶକ । ଦୁନିଆରେ ଶାନ୍ତି, ମୁକ୍ତି ଓ ସ୍ୱାଧୀନତା ପାଇଁ ସାତ ସମୁଦ୍ର ଓ ପାଞ୍ଚ ମହାଦେଶରେ ସୃଷ୍ଟି ହୋଇଥାଏ ଚରମ ଉଦ୍‌ବେଳନ । ମୁକ୍ତି ସଂଗ୍ରାମର ମଇଦାନରେ ଭିଏତ୍‌ନାମ୍, ଲାଓସ୍ ଓ କାମ୍ବୋଡ଼ିଆର ବ୍ୟାପକ ଜନସାଧାରଣଙ୍କର ଜାତୀୟ ମୁକ୍ତି ସାମ୍ମୁଖ୍ୟର ମୁକ୍ତି ସଂଗ୍ରାମ ଚରମ ସୀମାରେ ପହଞ୍ଚିଥାଏ । ମୋଟାମୋଟି ଆନ୍ତର୍ଜାତିକ ପରିସ୍ଥିତି ମଧ ଥାଏ ସ୍ୱାଧୀନତାକାମୀ ଜନଗଣଙ୍କ ପକ୍ଷରେ ଓ ପ୍ରତିକ୍ରିୟାଶୀଳ ଆମେରିକା ସାମ୍ରାଜ୍ୟବାଦ ଓ ସୋଭିଏତ୍ ସାମାଜିକ ସାମ୍ରାଜ୍ୟବାଦର ବିପକ୍ଷରେ । ଠିକ୍ ଏହି ସମୟରେ ଉତ୍ତର ଭାରତର ଦାର୍ଜିଲିଂ ଜିଲ୍ଲାର ନକ୍ସଲ୍‌ବାଡ଼ୀ ଅଞ୍ଚଳରେ ଶୁଭିଲା ମୁକ୍ତି ସଂଗ୍ରାମର ଆବାଜ । ସେ ଆବାଜ ଥିଲା ଶୋଷଣ ଓ ସାମନ୍ତବାଦୀ ଭୂ-ବ୍ୟବସ୍ଥା ଓ ଭୂ-ସମ୍ପର୍କ ବିରୁଦ୍ଧରେ ଚାଷୀ ଓ ଭୂମିହୀନ ଶ୍ରମିକ ମାନଙ୍କର ସଶସ୍ତ୍ର ସଂଗ୍ରାମର ଆବାଜ । ତାର ବିଶଦ ତର୍ଜମା କରିବାର ଅବସର ଏଠି ନାହିଁ । ତେବେ ଏତିକି କହିପାରେ ଯେ ବାମପନ୍ଥୀ ଇତ୍ୟାଦି ଦଳର ଯୁକ୍ତଫ୍ରଣ୍ଟ 'ଚାଷ ଯାହାର ଜମି ତାହାର' ପ୍ରଚାର କରି ପଶ୍ଚିମ ବଙ୍ଗରେ କଂଗ୍ରେସ୍‌କୁ ହଟାଇ କ୍ଷମତା ଦଖଲ କରିବାପରେ ଜୋତଦାର ଓ ଜମିମାଲିକମାନଙ୍କର ଜମି ମାଲିକାନା ଅତୁଟ ରଖିବାକୁ ଅପଚେଷ୍ଟା ଚଳାଇଲେ । ୧୯୬୭ ମସିହା ମେ ମାସରେ ଏହି ସରକାର ଶହ ଶହ କୃଷକ, ଭୂମିହୀନ କୃଷିଶ୍ରମିକ ଓ ସ୍ୱାଧୀନଚେତା ଜନସାଧାରଣଙ୍କୁ ଜେଲ୍‌ରେ ଭର୍ତ୍ତିକଲେ । ସଂଗଠିତ ସର୍ବହରା ଉପରେ ଉଗ୍ରଦମନର ପ୍ରତିରୋଧରେ ଜନ୍ମନେଲା ନକ୍ସଲ୍‌ବାଡ଼ି ଆନ୍ଦୋଳନ । ସେ "ବୈଶାଖୀ ବଜ୍ର" (Spring Thunder) ର ଧ୍ୱନୀରେ ବିପ୍ଳବ ମୁଖର ସାଥୀମାନେ ସଂଗ୍ରାମର ମଇଦାନକୁ ଓହ୍ଲାଇଲେ । ମୁଁ ନକ୍ସଲବାଡ଼ି ଗୁଳିକାଣ୍ଡକୁ ବିରୋଧ କରି ବିବୃତି ଦେବାରୁ ସି.ପି.ଆଇ.(ଏମ୍.)ର ସାଧାରଣ ସମ୍ପାଦକ ପି. ସୁନ୍ଦରାୟାଙ୍କ ଦ୍ୱାରା ସର୍ବପ୍ରଥମ ବ୍ୟକ୍ତି ହିସାବରେ ଦଳରୁ ବହିଷ୍କୃତ ହେଲି ଏବଂ ସେ ସଂଗ୍ରାମରେ ସାମିଲ୍ ହେଲି ।

ଆଉ ସେ ସଂଗ୍ରାମରେ ବୈକୁଣ୍ଠଥିଲା ମୋର ଜଣେ କମ୍ରେଡ୍ । ସେ ଥିଲା ସରଳ, ମୁକ୍ତିମନା ଓ ବିପ୍ଳବୀ ଭାବମାନସରେ ଉଦ୍‌ବୁଦ୍ଧ । ବିପ୍ଳବୀ ଆନ୍ଦୋଳନ ଭିତରକୁ ଆସିବା ପାଇଁ ସେ ମୋତେ ଯୋଗାଯୋଗ କରିଥିଲା । ଯୋଗାଯୋଗ ପ୍ରତିଷ୍ଠା ହେଲା ପରେ ତା' ସହିତ ମୋର ସମ୍ପର୍କ କେବଳ ଅତୁଟ ନଥିଲା ବରଂ ଗଭୀର ଆତ୍ମୀୟତା ବଢ଼ିଯାଇଥିଲା । ଯେ କୌଣସି ଗଣତାନ୍ତ୍ରିକ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ ବା କୃଷକ ଆନ୍ଦୋଳନ ହେଉ, ସେଥିରେ ଅବିପ୍ଳବୀ ବା ଭ୍ରାନ୍ତ ଝୁଙ୍କ୍ ଦେଖାଗଲେ ସେ ଖୋଲମଖୋଲା ସମାଲୋଚନା କରିବାକୁ ପଛାଉ ନଥିଲା । ଗଣ ଆନ୍ଦୋଳନରେ ସଠିକ୍ ପଥରେ ଆଗେଇବା ପାଇଁ ପରାମର୍ଶ ଦେବାର କ୍ଷମତା ତାର ଥିଲା । ଭଦ୍ରକ କଲେଜରେ ପଢ଼ିଲାବେଳେ ଅନେକ ଛାତ୍ରଙ୍କୁ ବିପ୍ଳବୀ ଆନ୍ଦୋଳନର ବଳୟ ଭିତରକୁ ଆଣିବାରେ ସେ ପ୍ରମୁଖ ଭୂମିକା ନେଇଥିଲା ।

୧୯୬୯ରେ ସି.ପି.ଆଇ (ମାର୍କ୍ସବାଦୀ-ଲେନିନବାଦୀ) ଗଢ଼ାଗଲା । ଗଣତାନ୍ତ୍ରିକ କୃଷି ବିପ୍ଳବକୁ ସଫଳ କରିବା ଥିଲା ଏହାର ଲକ୍ଷ୍ୟ । ମାତ୍ର ଏହା ଐକ୍ୟବଦ୍ଧ ନହୋଇ କ୍ରମେ କ୍ରମେ ବିଭେଦଗ୍ରସ୍ତ ହେବାରେ ଲାଗିଲା । ବିପ୍ଳବର ରାଜନୈତିକ କର୍ତ୍ତବ୍ୟ ଓ ସାଂଗଠନିକ କର୍ତ୍ତବ୍ୟରୁ ଗୁରୁତ୍ୱ ନଦେଇ

କେବଳ ସାମରିକ କର୍ତ୍ତବ୍ୟ ନାମରେ 'ଖତମ ଅଭିଯାନ' ଉପରେ ଗୁରୁତ୍ୱ ଦିଆଗଲା । ଏପରି ଭ୍ରାନ୍ତ ରଣନୀତିଗତ ଲାଇନ ଅନୁସରଣ କରାଯାଉଥିବାରୁ ବୈକୁଣ୍ଠ ଏହାକୁ ବିରୋଧ କରିଥିଲା । ମାତ୍ର ମତାଦର୍ଶଗତ କ୍ଷେତ୍ରରେ ସୃଷ୍ଟି ହୋଇଥିବା ଭ୍ରାନ୍ତ ଧାରଣାକୁ ବଦଳାଇବା ପାଇଁ ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ପାର୍ଟି ଭିତରେ ଏହାର ମୀମାଂସା ହୋଇପାରି ନଥିଲା । ଏପରି ଏକ ସଂକଟଜନକ ପରିସ୍ଥିତି ଭିତରେ ବୈକୁଣ୍ଠ ୧୯୭୧ ମସିହାରେ ଦିଲ୍ଲୀ ସ୍କୁଲ ଅଫ ଇକୋନମିକ୍ସରେ ପଢ଼ିବାପାଇଁ ଚାଲିଗଲା ।

ମୋତେ ଦୀର୍ଘ ଚାରି ବର୍ଷ ଆତ୍ମଗୋପନ କରିବାକୁ ପଡ଼ିଥିଲା । ଏହି ୪ ବର୍ଷ ମଧ୍ୟରୁ ବୈକୁଣ୍ଠ ସହ ତିନି ବର୍ଷ ଧରି ସମ୍ପର୍କ ଥିଲା । ୧୯୭୧ରେ ମୁଁ ଗିରଫ ହେବା ପୂର୍ବରୁ ବୈକୁଣ୍ଠ ବି.ଏ. ପାଶ୍ କଲା । ଅର୍ଥନୀତି ପଢ଼ିବା, ଗବେଷଣା କରିବାର କେଉଁଠି ସୁଯୋଗ ବେଶି ଅଛି ବୋଲି ପଚାରିଲା । ମୋର ବନ୍ଧୁ ଶ୍ରୀ ପ୍ରଶାନ୍ତ ପଟ୍ଟନାୟକ ଦିଲ୍ଲୀ ସ୍କୁଲ୍ ଅଫ୍ ଇକୋନମିକ୍ସରେ ଲେକ୍‌ଚରର୍ ଥାଆନ୍ତି । ଆଉ ଜଣେ ବନ୍ଧୁ, ନକ୍ସଲବାଡ଼ି ଆନ୍ଦୋଳନର ତତ୍‌କାଳୀନ ସମର୍ଥକ ଶ୍ରୀ ଅମର୍ତ୍ତ୍ୟ ସେନ୍ ମଧ୍ୟ ଦିଲ୍ଲୀ ସ୍କୁଲ୍‌ରେ ଥାଆନ୍ତି ଏବଂ ବନ୍ଧୁ ମନୋରଞ୍ଜନ ମହାନ୍ତି ମଧ୍ୟ ଦିଲ୍ଲୀ ବିଶ୍ୱ ବିଦ୍ୟାଳୟରେ ପ୍ରଫେସର ଥାଆନ୍ତି । ପଢ଼ିବା ଓ ଗବେଷଣା କରିବା ପାଇଁ ଦିଲ୍ଲୀ ସ୍କୁଲ୍ ଏକ ପ୍ରକୃଷ୍ଟ କ୍ଷେତ୍ର ହେବ ବୋଲି ସିଦ୍ଧାନ୍ତ କରି ସେ ନାମ ଲେଖାଇ ଫେରିଲା ପରେ ମୋର ଦେଖାହେଲା । ତାର କିଛି ଦିନ ପରେ ମୁଁ ଗିରଫ ହୋଇ କୋରାପୁଟ ଜେଲ୍‌କୁ ଗଲି । ଜଣେ ବନ୍ଧୁ ମୋତେ 'ମୁଲାକାତ' କରି କହିଲେ, "ବୈକୁଣ୍ଠ ଆପଣଙ୍କୁ ଦେଖାକରିବାକୁ ଚାହେଁ" । ମୁଁ କହିଲି, "ମୋତେ ଦେଖାକରିବା କିମ୍ବା ଚିଠିପତ୍ର ଦେବାର ଆବଶ୍ୟକତା ନାହିଁ । କାରଣ ସରକାରୀ ଦୃଷ୍ଟିକୋଣ ଅତି ଦମନମୂଳକ । ଜଣେ ବନ୍ଧୁ ଗାଁରୁ ମୋର ବହିପତ୍ର ସଂଗ୍ରହକରି ଆଣି ମୋତେ ଦେଖାକରିବାକୁ ଆସୁଥିଲେ । ତାଙ୍କୁ ବାଟରୁ ଧରିଦେଇ ଜେଲ୍‌ରେ ପୁରାଇଛନ୍ତି । ସେ ଆଗ ପାଠପଢ଼ା ଶେଷ କରୁ, ଆବଶ୍ୟକ ହେଲେ ମୁଁ ଖବର ଦେବି" ।

ସେ ପଢ଼ା ଶେଷକରି ୧୯୭୪ରୁ ଭୁବନେଶ୍ୱରରେ ବାସିନ୍ଦା ହେଲା । ୧୯୭୫ରେ ଜରୁରୀ ପରିସ୍ଥିତି ଜାରିଥିବା ବେଳେ ବୈକୁଣ୍ଠ-ସତ୍ୟଭାମାଙ୍କ ବିବାହ ସମ୍ପନ୍ନ ହେଲା । ସବୁ ଖଣ୍ଡାୟତ ସାଆନ୍ତ ମାନଙ୍କର ପ୍ରତିରୋଧ ସତ୍ତ୍ୱେ ଜାତି, ଯୌତୁକ ବିହୀନ ବିବାହ ଉତ୍ସବ ତାଙ୍କ ବନ୍ଧୁମାନେ ପାଳନକଲେ । ମୁଁ ମୋର ସାନଭାଇ ଆନନ୍ଦ ଠାରୁ ଶୁଣି ଖୁବ୍ ଆଶ୍ୱସ୍ତ ହେଲି । ଜରୁରୀ କାଳୀନ ପରିସ୍ଥିତିର ପରବର୍ତ୍ତୀ ସାଧାରଣ ନିର୍ବାଚନ ଇସ୍ତାହାରରେ ଜନତା ପାର୍ଟି ପ୍ରକାଶ କରିଥିଲା ଯେ ଜନତାପାର୍ଟିକୁ ଭୋଟ ଦେଲେ ସବୁ ରାଜନୈତିକ ବନ୍ଦୀଙ୍କୁ ମୁକ୍ତ କରାଯିବ । ନକ୍ସଲପନ୍ଥୀ ବନ୍ଦୀମାନଙ୍କୁ ଜନତା ସରକାର ରାଜନୈତିକ ବନ୍ଦୀର ମାନ୍ୟତା ଦେଇଥିଲେ । ମାତ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନୀଳମଣି ରାଉତରାୟ କୌଣସି ବନ୍ଦୀଙ୍କୁ ମୁକ୍ତ କଲେ ନାହିଁ । ପ୍ରତିବାଦରେ ଓଡ଼ିଶା ବିଧାନ ସଭାରେ ବହୁ ବିତର୍କ ହେଲା । ପରେ ମୁଁ ରାଉରକେଲା ଜେଲ୍‌ରୁ କଟକ ଜେଲ୍‌କୁ ବଦଳି ହୋଇ ଆସିବା ପରେ ବୈକୁଣ୍ଠ ମୋତେ 'ମୁଲାକାତ' କଲା । ସେ ମୋତେ ଜେଲ୍‌ରୁ ମୁକ୍ତ କରିବା ପାଇଁ ତତ୍‌କାଳୀନ ସ୍ୱରାଷ୍ଟ୍ରମନ୍ତ୍ରୀ ଚୌଧୁରୀ ଚରଣ ସିଂ ଓ ଜର୍ଜ ଫର୍ଣ୍ଣାଣ୍ଡିଜ୍‌ଙ୍କୁ ଅପିଲ ପଠାଇଥିଲା । ଜେଲରୁ ଖଲାସ ହେବାର ପାଞ୍ଚ ଦିନ ପରେ ମୁଁ ବୈକୁଣ୍ଠକୁ ତା'ର ଭୁବନେଶ୍ୱର ଭି.ଏସ.ଏସ୍. ନଗର ଘରେ ଭେଟିଲି । ତା ସାଙ୍ଗରେ ସେଦିନ ଅଟକିଗଲି । ସେ କହିଲା ଦେଶବାସୀ 'ଇନ୍ଦିରା କୁଶାସନ' ବିରୁଦ୍ଧରେ ଭୋଟ ଦେଲେ ସିନା, ମାତ୍ର ଗତ ଛ' ମାସର

କାର୍ଯ୍ୟକଳାପରୁ ଯାହା ଜଣାପଡୁଛି, ସାଧାରଣ ଲୋକଙ୍କୁ କିଛି ସୁଫଳ ମିଳିବ ନାହିଁ । ସେ ପ୍ରସ୍ତାବ ଦେଲା, "ଯେଉଁ ଆଦିବାସୀ, ଗରିବ ଲୋକେ ନକ୍ସଲପନ୍ଥୀ ଆନ୍ଦୋଳନରେ ସାମିଲ ହୋଇ ଜେଲ୍ ଭୋଗୁଛନ୍ତି, ଯେଉଁମାନେ ଫାଶୀଦଣ୍ଡରେ ଦଣ୍ଡିତ ହୋଇଛନ୍ତି, ସେମାନଙ୍କୁ ମୁକ୍ତ କରିବା ପାଇଁ ଆପଣ ପଦକ୍ଷେପ ନିଅନ୍ତୁ । ଦ୍ୱିତୀୟତଃ, ସି.ପି.ଆଇ(ଏମ୍.ଏଲ୍)ର ଯେଉଁ ବ୍ୟାପକ ସଭ୍ୟ, ସମର୍ଥକ ବିଭେଦଗ୍ରସ୍ତ ହୋଇପଡ଼ିଛନ୍ତି, ସେମାନଙ୍କୁ ଐକ୍ୟବଦ୍ଧ କରିବା ପାଇଁ ପ୍ରଚେଷ୍ଟା ହେଉ । ତୃତୀୟତଃ, ଭାରତ-ଚୀନ୍ ମୈତ୍ରୀ ସଂଘକୁ ସକ୍ରିୟ ଓ ବ୍ୟାପକ କରାଯାଉ । ଅନ୍ୟପକ୍ଷରେ ରାଜନୈତିକ ସଚେତନତାର ମାନ ନ ବଢ଼ିଲେ ସବୁ ପ୍ରୟାସ ବୃଥା ହୋଇଯିବ । ସେଥିପାଇଁ ଗୋଟିଏ ରାଜନୈତିକ ପତ୍ରିକା ପ୍ରକାଶନ ଅତି ଜରୁରୀ" । ଉପରୋକ୍ତ ଚାରୋଟି କାର୍ଯ୍ୟକ୍ରମର ଗୁରୁତ୍ୱ ଦୃଷ୍ଟିରୁ ମୁଁ ଆଗେଇଲି । ମାତ୍ର ବୈକୁଣ୍ଠ ବିଶେଷ ସକ୍ରିୟ ହେଲା ନାହିଁ । ମୁଁ ଦିଲ୍ଲୀଯାଇ ରାଜନୈତିକ ବନ୍ଦୀମୁକ୍ତି ବାବଦରେ ପି.ୟୁ.ସି.ଏଲ୍ ଚେୟାରମ୍ୟାନ ଜଷ୍ଟିସ୍ ତାରକୁଣ୍ଡ, ଦିଲ୍ଲୀ ବିଶ୍ୱବିଦ୍ୟାଳୟର ବହୁ ଅଧ୍ୟାପକ ବନ୍ଧୁ, ସାମ୍ବାଦିକ ବନ୍ଧୁ କୁଲଦୀପ ନାୟାର, ସମାଜସେବୀ କୃଷ୍ଣକାନ୍ତ କେତେଜଣ ସାଂସଦଙ୍କୁ ନେଇ ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତିଙ୍କୁ ଭେଟି ସ୍ମାରକପତ୍ର ଦେଲୁ । ଭାରତ ସରକାରଙ୍କ ନିର୍ଦ୍ଦେଶରେ ଆସ୍ତେ ଆସ୍ତେ ନକ୍ସଲପନ୍ଥୀ ବନ୍ଦୀମାନେ ଖଲାସ ହେଲେ । ମାତ୍ର ଆନ୍ଧ୍ର ଓ ତାମିଲ୍ ନାଡୁ ସରକାର କ୍ରିଷ୍ଟାଚେଟିଙ୍କୁ କୋଇମ୍ବାଟୁର ଜେଲ୍‌ରେ ଜୁଲାଇ ୨୬, ୧୯୭୮ ରେ ଫାଶୀ ଦେଲେ ।

'ଭାରତ ଚୀନ୍ ମୈତ୍ରୀ ସଂଘ'ର ପୁନର୍ଗଠନ ହେଲା । ବ୍ରହ୍ମପୁର, ଭୁବନେଶ୍ୱର, କଟକ ଓ କୋରାପୁଟରେ ଥିବା ଦୂତାବାସର ପ୍ରଥମ ସେକ୍ରେଟାରୀ ଓ ପରେ ଭାରତ-ଚୀନ୍ ମୈତ୍ରୀ ସଂଘର ତତ୍‌କାଳୀନ କାର୍ଯ୍ୟକାରୀ ସଭାପତି ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ସଭାପତିତ୍ୱରେ ବହୁ ସଭା ହେଲା । ଆମ ରାଜ୍ୟରୁ ଦୁଇଟି ପ୍ରତିନିଧି ଦଳ ଚୀନ୍ ଗସ୍ତରେ ଯାଇ ଫେରିଲେ ।

ଆମ ଦେଶରେ ସକ୍ରିୟ ଥିବା ଚାରୋଟି ବିଭେଦଗ୍ରସ୍ତ ଗୋଷ୍ଠୀ ସହିତ ସମ୍ପର୍କ, ଆଲୋଚନା କରି 'ବିପ୍ଳବ ସନ୍ଦେଶ' ପତ୍ରିକା ପ୍ରକାଶ କଲୁ । ସେପ୍ଟେମ୍ବର ୧୯୭୮ ଠାରୁ ପତ୍ରିକା ପ୍ରକାଶନ ହେଲା । ସବୁ ଗୋଷ୍ଠୀର ଲେଖା ପ୍ରକାଶ ପାଉଥିଲା । ମାତ୍ର ଲକ୍ଷ୍ୟବ୍ୟର୍ଥ ହେଲା । କାରଣ ଗୋଟିଏ ଗୋଷ୍ଠୀ ଯାହାଙ୍କର ମତାମତ 'ବିପ୍ଳବ ସନ୍ଦେଶ'ରେ ପ୍ରକାଶ ପାଉଥିଲା ସେ ଗୋଷ୍ଠିଟି 'ମୁକ୍ତିକାମୀ' ନାମକ ଅନ୍ୟଏକ ପତ୍ରିକା ପ୍ରକାଶ କଲେ । ବୁଝାଗଲା ସେମାନେ ଐକ୍ୟବଦ୍ଧ ହେବାକୁ ଚାହାନ୍ତି ନାହିଁ । ମାତ୍ର ଆଧିପତ୍ୟ ବଜାୟ ରଖିବାକୁ ଚାହାଁନ୍ତି । ଏହି ପରିସ୍ଥିତିରେ 'ବିପ୍ଳବ ସନ୍ଦେଶ' ପତ୍ରିକା ସ୍ଥଗିତ ରଖିବା ଛଡ଼ା ମୋ ପକ୍ଷରେ ଅନ୍ୟ କିଛି ବାଟ ନଥିଲା । 'ବିପ୍ଳବ ସନ୍ଦେଶ'ର ପ୍ରାୟ ପ୍ରତ୍ୟେକ ସଂଖ୍ୟା ବୈକୁଣ୍ଠର ଲେଖାରେ ସମୃଦ୍ଧ । ସେ ଖୁବ୍ ଭଲ ଲେଖେ । ବାସ୍ତବ ଅବସ୍ଥାର ବାସ୍ତବ ବିଶ୍ଳେଷଣ କରିବାରେ ତା'ର ଦକ୍ଷତା ଥିଲା । ମାତ୍ର ତା'ଠାରୁ ଲେଖା ମିଳିବା ବହୁ କଷ୍ଟକର ବ୍ୟାପାର । ଗୋଟାଏ ଗୋଟାଏ ଲେଖାପାଇଁ ତା' ପାଖକୁ ମତେ ହାରାହାରି ତିନିଥର ଆସିବାକୁ ପଡ଼େ । ତା' ପାଖକୁ ଆସିବା ଓ ତା' ସହିତ ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା କରିବା ଖୁବ୍ ଆନନ୍ଦଦାୟକ । ସେ ବି ବେଳେବେଳେ ମୋତେ ଭେଟେ । ଲେଖା ଦେବାକୁ ପ୍ରେସ୍ ପର୍ଯ୍ୟନ୍ତ ଯାଏ । ଏସବୁ ସତ୍ତ୍ୱେ ଆମେ 'ବିପ୍ଳବ ସନ୍ଦେଶ' ପ୍ରକାଶନ ସ୍ଥଗିତ କଲୁ ।

ଜନସାଧାରଣଙ୍କର ସଚେତନତାର ମାନ ବଢ଼ାଇବା ପାଇଁ ସେ 'ଲୋକାଗ୍ରହ' ସାପ୍ତାହିକ ପ୍ରକାଶ କରିବା ପାଇଁ ପ୍ରସ୍ତୁତ ହେଲା । 'ଲୋକାଗ୍ରହ'ର ନାମକରଣ ଠାରୁ ପ୍ରକାଶନ ପର୍ଯ୍ୟନ୍ତ ସେ ମୋ ସହିତ ଆଲୋଚନା କରେ । ମାତ୍ର ଓଡ଼ିଶାରେ ପତ୍ରିକା ବଞ୍ଚାଇବା ବଡ଼ କଷ୍ଟ । ବିଜ୍ଞାପନ ନଥାଏ । ମୁଁ ତାକୁ କହିଲି 'ବ୍ରଡ୍‌ସିଟ୍' କରି ଗୋଟିଏ ଚାରି ପୃଷ୍ଠିଆ କାଗଜ କରାଯାଉ । ସେ ତ ପରିକଳ୍ପନାରେ ସାହାଜାହାନ୍ ! ମୋର କ୍ଷୁଦ୍ର ପ୍ରସ୍ତାବକୁ ସେ କାହିଁକି ମାନନ୍ତା ? ଷୋହଳ ପୃଷ୍ଠାରୁ କୋଡ଼ିଏ ପୃଷ୍ଠା ପର୍ଯ୍ୟନ୍ତ ପତ୍ରିକାର ପୃଷ୍ଠା ବଢ଼ିଲା । ଶେଷରେ ଅନାଟନ ଗ୍ରାସିବାରୁ 'ଲୋକାଗ୍ରହ' ବନ୍ଦ ହୋଇଗଲା । ମୁଁ ଜାଣିଛି 'ଲୋକାଗ୍ରହ'ର କେହି ଗ୍ରାହକ ତା' ଘରକୁ ଆସିଲେ ସେ ତାଙ୍କୁ ଖୁବ୍ ଆପ୍ୟାୟିତ କରେ । ଖୁବ୍ ଖର୍ଚ୍ଚ କରେ । ତା'ର ଖୁବ୍ ଖର୍ଚ୍ଚି ହାତ । ଟଙ୍କା ନଥାଇପାରେ । ମାତ୍ର ବନ୍ଧୁ ଚର୍ଚ୍ଚାରେ ଅବହେଳା ହେବ ନାହିଁ । 'ଲୋକାଗ୍ରହ' ପ୍ରକାଶ ପାଉଥିବା ବେଳେ ମୋତେ ଏକ ପ୍ରସ୍ତାବ ଦେଲା । କହିଲା, "ଆପଣଙ୍କ କେତୋଟି କବିତା ଗୋଟିଏ କବିତା ବହିରେ ପ୍ରକାଶ କରିବା" । ତାକୁ ଖର୍ଚ୍ଚାନ୍ତ କରାଇବାକୁ ମୁଁ ଚାହୁଁନଥିଲି । ତେଣୁ ମନା କରୁଥିଲି । ମାତ୍ର ସେ କହିଲା, "ମୋ ପ୍ରେସ୍‌କୁ ତ କମ୍ ସେ କମ୍ ସାତ ଦିନର କାମ ମିଳିଯିବ" । ବହିର ନାମ ହେଲା 'ପୂର୍ବଘାଟ ଲାଲ୍' । ଓଡ଼ିଶାର ଜଣେ ବିଖ୍ୟାତ କଳାକାର ବୈକୁଣ୍ଠ ପ୍ରତି ସ୍ନେହରେ ପ୍ରଚ୍ଛଦ ପ୍ରସ୍ତୁତ କଲେ । ମଠା ରଙ୍ଗର ବାଇଣ୍ଡିଂ କାଗଜରେ କଭର୍‌ଟି ଛପା ହୋଇଥିଲା । ସେ ଜଣେ ବନ୍ଧୁଙ୍କୁ କହିଥିଲା ଯେ 'ପୂର୍ବଘାଟ ଲାଲ୍' ବହିକୁ ସେ ବିପ୍ଳବୀ କବିତାର ମର୍ଯ୍ୟାଦା ଦିଏ ।

'ଲୋକାଗ୍ରହ'ରେ ଅନେକ ଉପାଦେୟ ଲେଖା ସେ ଲେଖିଥିଲା । ସେଥିରୁ ଯଦି କେତୋଟି ଲେଖା ଉଦ୍ଧାର କରାଯାଇ ପାରନ୍ତା, ତାହା ହେଲେ ସାମାଜିକ ଓ ରାଜନୈତିକ କର୍ତ୍ତବ୍ୟ ସଂପାଦନ ଦୃଷ୍ଟିରୁ ତାତ୍‌ପର୍ଯ୍ୟପୂର୍ଣ୍ଣ ହୁଅନ୍ତା ।

ଏବେ ବୈକୁଣ୍ଠର ଝିଅ ଚେତନା ତାର ବାପାଙ୍କର କିଛି ଲେଖା ଓ ତାଙ୍କ ବାପାଙ୍କ ସଂସ୍ପର୍ଶରେ ଆସିଥିବା ତାଙ୍କ ବନ୍ଧୁମାନଙ୍କର ଅନୁଭୂତି ସମ୍ବନ୍ଧିତ ଲେଖା ତାଙ୍କ ଶ୍ରାଦ୍ଧ ବାର୍ଷିକୀରେ ଆସନ୍ତା ମେ ୨୯, ୨୦୦୬ରେ ସ୍ମରଣିକା ଆକାରରେ ପ୍ରକାଶ କରିବା ପାଇଁ ପ୍ରସ୍ତାବ ଦେଇଛି ଏବଂ ମୋତେ ସଂପାଦନା କରିବାର ଦାୟିତ୍ୱ ଦେଇଛି । ବୈକୁଣ୍ଠ ବିଶ୍ୱାଳଙ୍କର ଅନେକ ସ୍ନେହୀ, ବନ୍ଧୁ, ସାଥୀ, ଆତ୍ମୀୟସ୍ୱଜନ ଲେଖା ପଠାଇଛନ୍ତି । କେତୋଟି ଲେଖାରେ ତଥ୍ୟଗତ ତ୍ରୁଟି ରହିଛି । ତଥାପି ସଂଶୋଧନ ନକରି ଆମେ ସେମାନଙ୍କର ଲେଖା ଅବିକଳ ପ୍ରକାଶ କରୁଛୁ । କେତୋଟି ଲେଖା ସମାଲୋଚନାମୂଳକ ହୋଇଥିବାରୁ ତା' ସମ୍ମୁଖୀନ ହେବାପାଇଁ ତା'ର ସମ୍ପୂର୍ଣ୍ଣ ତଥ୍ୟ ସିପିଆଇ (ଏମ୍.ଏଲ୍)ର ଜଣେ ପ୍ରତିଷ୍ଠାତା ସଭ୍ୟ ରୂପେ ଅନ୍ୟତ୍ର ପ୍ରକାଶ କରିବା ପାଇଁ ଚେଷ୍ଟା କରିବି । ଏହି ସ୍ମରଣିକାରେ ଏହା ସମ୍ଭବ ନୁହେଁ । ବୈକୁଣ୍ଠଙ୍କର ବନ୍ଧୁ ଓ ସାଥୀମାନେ ତାଙ୍କର ମାନବିକ ଗୁଣର ଉଚ୍ଚପ୍ରଶଂସା କରିଥିବାରୁ ଏବଂ ତାଙ୍କ ଅକାଳ ମୃତ୍ୟୁରେ ସମବେଦନା ଜଣାଇଥିବାରୁ ମୁଁ ସେମାନଙ୍କୁ କୃତଜ୍ଞତା ଜଣାଉଛି ।

ରବି ଦାଶ

ତାରପୁର, କଟକ

# ଦୁର୍ଲଭ ଶିଷ୍ୟ ଜଣେ

*ଶ୍ରୀମଦ୍ ଜୟଦେବ ବ୍ରହ୍ମଚାରୀ*

୧୯୮୦ ମସିହାର ପ୍ରଥମ ଭାଗ । ଦିନେ ଟଙ୍କପାଣି ରୋଡ଼ସ୍ଥ ବିଷ୍ଣୁ ମନ୍ଦିରଠାରେ ସନ୍ଧ୍ୟା ୬ଟା ବେଳେ ଆସି ପହଞ୍ଚିଲେ ବୈକୁଣ୍ଠ ବିଶ୍ୱାଳ । ସାଙ୍ଗରେ ଥିଲେ ଆଉ ଜଣେ ଭଦ୍ରଲୋକ । ଦୀର୍ଘ ଦୁଇ ଘଣ୍ଟା ଧରି ଆଧ୍ୟାତ୍ମିକ ଚିନ୍ତାଧାରା ବିଷୟରେ ଆଲୋଚନା ହେଲା । ତାର ଗତି ବନ୍ଦ ହେବାର ନଥିଲା । ମାତ୍ର ନିତ୍ୟକର୍ମରେ ବାଧା ସୃଷ୍ଟି ହେଉଛି ଜାଣି ଅନିଚ୍ଛା ସତ୍ତ୍ୱେ ସେମାନଙ୍କୁ ବିଦାୟ ଦେଲି । ଗଲାବେଳେ ତାଙ୍କ ପରିଚୟ ଜାଣିବାକୁ ଚାହିଁଲି । ଏତିକିମାତ୍ର କହିଲେ, "ଆମେ ସାଧାରଣ ଲୋକ । ସାଧାରଣ କିଛି ବ୍ୟବସାୟ କରୁ । ଲୋକମୁଖରୁ ଏ ମଠ ମନ୍ଦିରର କିଛି ମାହାତ୍ମ୍ୟ ଅଛି ଜାଣି ଦର୍ଶନ କରିବାକୁ ଆସିଥିଲୁ ।" ବାବୁମାନେ ଚାଲିଯିବା ପରେ ମନେ ମନେ ଚିନ୍ତା କଲି । ଏହାଙ୍କର ସରଳ ଓ ନିରାଡ଼ମ୍ବର ବେଶଭୁଷା, ମଧୁର ବ୍ୟବହାର ତଥା ଶିଷ୍ଟାଚାର ଅସାଧାରଣ । ତଥାପି ବିଶେଷ ପରିଚୟ ଜାଣିବାର ଅଭିଳାଷ ସ୍ୱତଃ ମନରେ ଉଦୟ ହୁଏ । ସେତେବେଳେ ରାଜଧାନୀର ବାଟଘାଟ, ସହର ବଜାର ସେତେ ଉନ୍ନତ ନଥିଲା । ପ୍ରାଚୀନ ମନ୍ଦିର ଛଡ଼ା ନୂତନ ମନ୍ଦିର ବିଶେଷ ନଥିଲା, ଯାହାକି ବର୍ତ୍ତମାନ ଅଳି-ଗଳି ସବୁଠି ଗଢ଼ି ଉଠୁଛି । ଏ ବାବୁ ବାଣୀବିହାର ପାଖରୁ ଏତେବାଟ ପରିଶ୍ରମ କରି କାହିଁକି ଆସିଛନ୍ତି ? ଉଦ୍ଦେଶ୍ୟ କଣ ? କି ପ୍ରକାର ଲାଭ ସେ ପାଇବେ ? ତା' ପରେ ସେ ଅନେକଥର ଆଶ୍ରମକୁ ଆସନ୍ତି । ଦିନେ ଦିନେ ଅନେକ ରାତ୍ରି ପର୍ଯ୍ୟନ୍ତ ଶାସ୍ତ୍ର ତଥା ଆଧ୍ୟାତ୍ମିକ ଆଲୋଚନାରେ ସମୟ କଟିଯାଏ ।

ଦୀର୍ଘଦିନ ଧରି ତାଙ୍କ ସମ୍ପର୍କରେ ଆସିଥିବାରୁ ତାଙ୍କର ମହାନ୍ ବ୍ୟକ୍ତିତ୍ୱ ଓ ଜ୍ଞାନର ଗଭୀରତା ଉପଲବ୍ଧି କରିଥିଲି । 'ମିତଂ ଚ ସାରଂ ଚ ବଚ ହି ଦୁର୍ଲଭଂ' । ବୈକୁଣ୍ଠ ବାବୁଙ୍କ ନିକଟରେ ବହୁ କଥାକୁ ଶୁଣିବା ଅଥଚ ଅଳ୍ପ କଥା କହି ସାର କଥାକୁ ବ୍ୟକ୍ତ କରିବାର ଦୁର୍ଲଭ ଦକ୍ଷତା ଥିଲା । ସେ ଥିଲେ ଜ୍ଞାନ ପିପାସୁ, ଉଦ୍ୟମୀ, ଉତ୍ସାହୀ, କାର୍ଯ୍ୟଦକ୍ଷ, ସମାଜସେବୀ । ଦୀର୍ଘଦିନ ଧରି ଇଂରାଜୀ ଓ ଓଡ଼ିଆ ପତ୍ରିକାରେ ସାମ୍ବାଦିକ ତଥା ସମ୍ପାଦକ ରୂପେ କାର୍ଯ୍ୟ କରିଥିବାରୁ ରାଜନୀତି ମହଲରେ ସୁପରିଚିତ ଏବଂ ଲୋକପ୍ରିୟ ହୋଇ ପାରିଥିଲେ । ସହଜ, ସରଳ ଓ କୋମଳ ବ୍ୟବହାର ଦ୍ୱାରା ସମସ୍ତଙ୍କ ମନ ଜୟ କରି ପାରୁଥିଲେ ।

ସମାଜ ତଥା ଦେଶବାସୀଙ୍କ ପାଇଁ ସେ ଉଚ୍ଚଭାବନା କରୁଥିଲେ ଏବଂ ଯୋଜନା ମଧ୍ୟ ପ୍ରସ୍ତୁତ କରିଥିଲେ । ସ୍ୱାର୍ଥତ୍ୟାଗ ଓ ନିଷ୍ଠାସହ କାର୍ଯ୍ୟରେ ଅଗ୍ରସର ହେଉଥିଲେ ମଧ୍ୟ ଉପଯୁକ୍ତ ସହଯୋଗୀ ଓ ସମ୍ବଳ ଅଭାବରୁ ସଫଳକାମ ହୋଇ ପାରିନଥିଲେ । ନିଜସ୍ୱ 'ନବପ୍ରଭାତ' ସମ୍ବାଦପତ୍ର ଏବଂ 'ଲୋକାଗ୍ରତ' ପତ୍ରିକା ମାଧ୍ୟମରେ ନିଜର ଉନ୍ନତ ଭାବଧାରା ଓ ସାମାଜିକ ପରିସ୍ଥିତି ବ୍ୟକ୍ତ କରୁଥିଲେ । ଓଡ଼ିଶାରେ ସାମ୍ବାଦିକତା କ୍ଷେତ୍ରକୁ ଏହି ପତ୍ରିକାଗୁଡ଼ିକ ମାଧ୍ୟମରେ ସମୃଦ୍ଧ କରିବାର ଉଦ୍ୟମରେ ତାଙ୍କ ଅନ୍ତରାୟ ହେଉଥିଲା ଆର୍ଥିକ ଅନଟନ । ବିଚକ୍ଷଣ ପ୍ରତିଭା ଓ ଅଦମ୍ୟ ଇଚ୍ଛା ସତ୍ତ୍ୱେ ତାଙ୍କ ଉଦ୍ୟମ ଏହି କାରଣ ଯୋଗୁଁ ସଫଳ ହୋଇପାରୁ ନଥିଲା । ଅକସ୍ମାତ ଦେହାନ୍ତ ହୋଇଥିବାରୁ ସମସ୍ତ ଉଦ୍ୟମ ତଥା କାର୍ଯ୍ୟ ଅସମାପ୍ତ ହୋଇ ରହିଲା ।

ଆଶ୍ରମ ଓ ମନ୍ଦିରର ଉନ୍ନତି କଳ୍ପେ ସେ ଅନେକ ଯୋଜନା କରିଥିଲେ । ତା ମଧ୍ୟ ଅସମ୍ପୂର୍ଣ୍ଣ ହୋଇ ରହଲା । ତାଙ୍କ ପ୍ରଚେଷ୍ଟାରୁ ଆଶ୍ରମର ପତ୍ରିକା 'ଯୋଗବିଜ୍ଞାନ' ପ୍ରକାଶିତ ହୋଇଥିଲା । ୧୯୮୦ ମସିହାର ଶେଷରୁ ଏହି ଆଶ୍ରମରେ ଆଶ୍ରିତ ହୋଇ ଆଶ୍ରମ ପ୍ରତି କର୍ତ୍ତବ୍ୟ ପାଳନ କରୁଥିଲେ । ଅନେକଥର ମୁଁ ଭୋର ୪ଟା ବେଳକୁ ଆଶ୍ରମ ଫାଟକ ଖୋଲି ଦେଖେ ଯେ ବାହାରର ସଂଲଗ୍ନ ରାସ୍ତାଘାଟ ଓଳାସରିଛି । ଆଶ୍ରମର କାର୍ଯ୍ୟ, ଅନୁଷ୍ଠାନ ସଂକ୍ରାନ୍ତରେ କିଛି କହିବା ପୂର୍ବରୁ ହିଁ ସେ ଆବଶ୍ୟକ କାର୍ଯ୍ୟ କରିଦିଅନ୍ତି । ଏପରି ଦୂରଦର୍ଶିତା ବିରଳ । ବିଶେଷ ଜ୍ଞାନୀ ହୋଇ ମଧ୍ୟ ସମସ୍ତଙ୍କ ସହିତ ଅତ୍ୟନ୍ତ ବିନୟରେ ମିଶି ପାରନ୍ତି । ଅତି ସାଧାରଣ ମଣିଷଠାରୁ ଆରମ୍ଭ କରି ବିଶିଷ୍ଟ ବ୍ୟକ୍ତିମାନଙ୍କ ସହ ସମାନ ଭାବରେ ଉପଯୁକ୍ତ ବ୍ୟବହାର କରିବାର ଗୁଣ ଓ ଦକ୍ଷତାକୁ ତାଙ୍କ ସଂସ୍ପର୍ଶରେ ନ ଆସିଲେ ଉପଲବ୍ଧି କରିହେବ ନାହିଁ । ତାଙ୍କ ବିୟୋଗରେ ଆଶ୍ରମ ଓ ଶିଷ୍ୟବୃନ୍ଦ ବିଶେଷ ଦୁଃଖିତ ।

ଆର୍ଯ୍ୟ ଋଷିକୂଳ ବଶିଷ୍ଠ ଯୋଗାଶ୍ରମ
ଟଙ୍କପାଣି ରୋଡ୍, ଭୁବନେଶ୍ୱର



# ସ୍ମୃତି ତ କଦାପି ନୁହେଁ ଭୁଲିବାର ଭୁଲିପାରିଲେ ମୁଁ ପାଆନ୍ତି ନିସ୍ତାର

*ସତ୍ୟଭାମା*

ମୋ ଝିଅ ଚେତନା ତା ବାପାଙ୍କ କଥା କିଛି ଲେଖିବାକୁ ମୋତେ ବାଧ୍ୟ କରୁଛି । ମୁଁ କ'ଣ ଲେଖିବି ? ମୁଁ ସେ ବ୍ୟକ୍ତିତ୍ୱକୁ ଯେତିକି ଅଙ୍ଗେ ନିଭେଇଛି, ସେସବୁ ଅପ୍ରକାଶ୍ୟ, ସବୁଗୁଡ଼ିକ ହୃଦୟର ସାଇତା ସମ୍ପଦ । ଅନ୍ତତଃ ଏ ଜୀବନର ସ୍ମୃତି ବିସ୍ମୃତ ହେବା ପର୍ଯ୍ୟନ୍ତ ।

ଶ୍ରୀଗୁରୁକୃପା, ପ୍ଲଟ୍ ନଂ ୪୩୫୭
ଟଙ୍କପାଣି ରୋଡ୍, ଭୁବନେଶ୍ୱର



## ସ୍ମୃତିରୁ ଝିଏ

# ପିଲାବେଳୁ ବଡ଼ହେବା ଯାଏ

*କୈଳାଶ ଟିକାୟତରାୟ*

ବୟସରେ ସିଏ ମୋ ଠୁଁ ଦୁଇବର୍ଷ ସାନ । ହେଲେ ଆଗ ଚାଲିଗଲା । କହିକରି ମଧ୍ୟ ଗଲାନି । ସବୁ ବାକି ରଖିଦେଇଗଲା ।

ପିଲାବେଳେ ମନେ ନଥିବା ଅନେକ ଘଟଣା, ପରେ ଅନ୍ୟମାନଙ୍କ ମୁହଁରୁ ଶୁଣିକରି ଜାଣିଲୁ । ସେହି କ୍ରମରେ ଜାଣିଲୁ ଯେ ତା' ପୂର୍ବରୁ ଯେତେ ଭାଇ ଜନ୍ମ ହୋଇଥିଲେ, ସଭିଙ୍କୁ ଗୋଟି ଗୋଟି କରି ଯମ ନେଇ ଯାଉଥିଲା ବୋଲି ଇଏ ଜନ୍ମ ହେଲା ବେଳକୁ ବାପ ମା' ସାଇ ପଡ଼ିଶା ନାଆଁ ଦେଲେ 'ଅଇଁଠା' । ପିଲାବେଳେ ସେଇଥିପାଇଁ ତାକୁ ଯମ ଛୁଇଁଲାନି । ଏବେ ଆମ ଗାଆଁର ଆମଠୁଁ ବୟସ୍କ ଲୋକେ ତାକୁ ଅଇଁଠା ବୋଲି ଜାଣନ୍ତି, ହେଲେ ଯମ ଛୁଇଁ ଦେଲା ।

କାଗଜ କଲମରେ ତା' ନାଆଁ ହେଲା ବୈକୁଣ୍ଠ । ଏ ନାଆଁ କିଏ କେଉଁଦିନ ଦେଲା କେଜାଣି, ଶୁଣିଛି ମୁଁ କାଳେ କେତେବେଳେ ଏ ଶବ୍ଦ କହିଥିଲି ତା'ପାଇଁ । ସତକଥା, ମୋର ସେମିତି ମନେ ପଡୁନି ।

କଳା ମଚମଚ ଚେହେରାକୁ ବୈକୁଣ୍ଠ ବିହାରୀ ନାଆଁଟି ବେଶ୍ ସାଜୁଥିଲା । ଗାଆଁ ଦାଣ୍ଡକୁ ଲାଗି ଘରର ଦରଜା ଆଉ ପିଣ୍ଡା । ତା' ଉପରେ ଦଉଡ଼ା ଧାଆଁ କରି ଖେଳିବାବେଳେ ସିଏ ବାରି ହୋଇ ପଡୁଥିଲା ସବୁରିଙ୍କ ଭିତରେ । ହେଲେ ସିଏ ଖେଳାଖେଳିରେ ବେଶୀ ମନ ଦେଉ ନଥିଲା । ଘର ସାମନାରେ ସେ ସମୟରେ ଦାଣ୍ଡ ମଝିକୁ ଖଣ୍ଡେ ଚାଳଘର ଥିଲା । କେତେଜଣ ଅବଧାନ ଆସି ସେଠି ଆମକୁ ପାଠ ପଢ଼େଇଛନ୍ତି, ଏବେ ସମସ୍ତଙ୍କ ନାଆଁ ମନେ ନାହିଁ । ଆମ ଗାଆଁରେ ପ୍ରାଥମିକ ସ୍କୁଲଟିଏ ନଥିଲା ବୋଲି ଆମେ ପାଖ ଗାଆଁ ମାନଙ୍କରେ ବୁଲି ବୁଲି ତୃତୀୟ ଶ୍ରେଣୀଯାଏ ପାଠପଢ଼ିଛୁ । ଗାଆଁ ଦାଣ୍ଡର ସେଇ ଚାଳଘର ଚାହାଳିକୁ କିନ୍ତୁ ବୈକୁଣ୍ଠ ଆସିବାକୁ ମୋଟେ ରାଜି ନଥିଲା । ଖାଲି ଲୁଚୁଥିଲା । ମନେ ପଡୁଛି, ଜଣେ ପୂର୍ଣ୍ଣ ଦାଢ଼ିରଖିଥିବା ଅବଧାନ, ଯାହାଙ୍କୁ ବହୁଦିନ ପର୍ଯ୍ୟନ୍ତ ଆମେ 'ବୀଣାଦ' ମାଷ୍ଟର ବୋଲି ଜାଣିଥିଲୁ, ତାଙ୍କ ଠିକ୍ ନାଆଁ କେବେ ବି ବୁଝିନୁ, ତାଙ୍କୁ ଖୁବ୍ ଡରୁଥିଲା ସେ । କାହିଁକି କେଜାଣି ସେଥିପାଇଁ ସେ ଆସିଲେ ଇଏ ଦଉଡ଼ିବାକୁ ଆରମ୍ଭକରେ । ତା'ପରେ ସିଏ ବି ସେଠି ରହିଲେନି କି ଆମ ଗାଆଁ ଚାହାଳି ଚାଲିଲାନି । ମୁଁ ମୋ ତିନି ଶ୍ରେଣୀ ପଢ଼ିବାକୁ ଆମ ଗାଆଁର ଗୋଟେ ପାଖ ବ୍ରାହ୍ମଣୀ ନଈକୁ ଛାଡ଼ି ଦେଲେ ପଶ୍ଚିମରେ ପେଣ୍ଠପାଳ ସ୍କୁଲ୍, ପୂର୍ବରେ ପଥୁରିଆଡିଆ ବାଉଁଶଗଛ ମୂଳ ଏବଂ ଦାଣ୍ଡିସାହି ବ୍ରାହ୍ମଣସାହି

ପାଖ ଆମ୍ବତୋଟାରେ ପାଠପଢ଼ିଛି । ଏଇ ଆମ୍ବତୋଟାରେ ମୋ ଜୀବନର ପରମପୂଜ୍ୟ ଶିକ୍ଷକ ଗୋକୁଳି ସାର୍ (ଗୋକୁଳି ଚରଣ ମହାନ୍ତି)ଙ୍କ ଠାରୁ ନିଜପାଇଁ ପାଠପଢ଼ିବାର ଏକ ବିଧିବଦ୍ଧ ଧାରା ଆରମ୍ଭ ହେଲା । ମୋ ପଛେ ପଛେ ବୈକୁଣ୍ଠ ସେଇଠି ପହଞ୍ଚିଲା । ସେଇ ପୁଣ୍ୟାତ୍ମାଙ୍କ ଆଶୀର୍ବାଦକୁ ପୁଞ୍ଜିକରି ଆମେ ଆଗକୁ ଯିବା ଆରମ୍ଭ କଲୁ ।

ବୈକୁଣ୍ଠ ମୋଠୁଁ ଦିବର୍ଷ ସାନ । ହେଲେ କେଜାଣି କାହିଁକି ହଠାତ୍ ସଭିଙ୍କଠୁ ଦି'ଗୁଣ ସ୍ନେହ ଶୁଭେଚ୍ଛା ତା' ଉପରେ ଅଜାଡ଼ି ହୋଇପଡୁଥିଲା ସଭିଙ୍କର । ଆମେ ବି ତାକୁ ଖୁବ୍ ଭଲ ପାଉଥିଲୁ ।

ତା' ବାପା ଖୁବ୍ ରାଗୀ ମିଜାଜ୍‌ର ଲୋକଥିଲେ । ମା' କିନ୍ତୁ ଖୁବ୍ ସହିଷ୍ଣୁ । ବେଳେବେଳେ କାରଣ ଅକାରଣରେ ଅତି ଅମାନୁଷିକଭାବେ ବୈକୁଣ୍ଠକୁ ବାପାଙ୍କଠୁ ମାଡ଼ ଖାଇବାର ଦେଖିଛୁ । ଗୋଟିଏ ବୋଲି ପୁଅ, ତଥାପି ବାପାଙ୍କ କଡ଼ା ଶାସନରୁ ବାଦ ପଡୁନଥିଲା ସେ । କଲିକତାରେ କାମ କରି ଯେଉଁ କେତେଦିନ ପାଇଁ ସେ ଗାଆଁକୁ ଆସୁଥିଲେ, ଖାଲି ବୈକୁଣ୍ଠ କାହିଁକି, ଆମେ ବି ଡରୁଥିଲୁ ତାଙ୍କୁ । ବଡ଼ ବଡ଼ ନିଶପାଇଁ ତାଙ୍କର ଏକ ସ୍ୱତନ୍ତ୍ର ପରିଚୟ ଥିଲା । ବୋଧେ ତାଙ୍କ ରାଗ ଓ ନିଶପାଇଁ ଆମେ ତାଙ୍କୁ ଡରୁଥିଲୁ । କିନ୍ତୁ ଅନେକ ବର୍ଷ ପରେ, ଯେଉଁଦିନ ବୈକୁଣ୍ଠର ବାହାଘର ପ୍ରସ୍ତାବ ନେଇ ଉଠିଥିବା ବିବାଦର ସମାଧାନ ଦାୟିତ୍ୱ ମୋ ଉପରେ ପଡ଼ିଲା, ସେଦିନ ମୁଁ ସେଇ ମଣିଷଟି ଭିତରେ ପିତୃତ୍ୱର ମହାନ୍ କୋମଳତାର ସ୍ପଷ୍ଟ ସନ୍ଧାନ ପାଇଥିଲି । ସେକଥା ଆଉ କେବେ କହିବି ।

ପାଠ ପଢ଼ା ଆରମ୍ଭ କରି ବୈକୁଣ୍ଠ ହାଇସ୍କୁଲରେ ପାଦଦେଲା ବେଳକୁ ତା'ର ସେମିତି କିଛି ପରିଚୟ ନଥିଲା । ବରଂ ଏକ ରୋଗିଣା ନରମା ପିଲାଟିଏ ପରି ସାଧାରଣ ପିଲାଙ୍କ ଭିତରେ ସିଏ ବି ଜଣେ ଅତି ସାଧାରଣ ପିଲା ଥିଲା । ମନେ ପଡୁଛି, ଏକ କ୍ଷୁଦ୍ର ମାଂସ ପିଣ୍ଡୁଳା ତା' ନାକରୁ ବଢ଼ି ବଢ଼ିବଢ଼ି ବେଳେବେଳେ ବାହାରଯାଏ ଖସିଆସେ । ତିନିତିନି ଥର କଲିକତା ନେଇ ଅପରେସନ୍ କରିବାକୁ ପଡ଼ିଥିଲା ।

ହାଇସ୍କୁଲ୍ ମାଡ଼ିଲା ବେଳକୁ ବୈକୁଣ୍ଠର କଥା କହିବାର ଶୈଳୀ ବଦଳି ଯାଇଥିଲା । ଆମେ ସଭିଏଁ ଅନୁଭବ କରୁଥିଲୁ ଯେ ତା' କଥାର ଓଜନ ଅଲଗା । ଆମ ବିଦ୍ୟାଳୟର ଶିକ୍ଷକମାନେ ମଧ୍ୟ ତା'ପ୍ରତି ସ୍ୱତନ୍ତ୍ର ଦୃଷ୍ଟିଦେବାକୁ ଆରମ୍ଭ କରିଦେଇଥିଲେ । ପାଠସବୁ ସେ ଆପଣାଛାଏଁ ଥରକରେ ମନେ ରଖିଦେଉଥିଲା । ଆଉ ଶାଠ, ମାନେ ବକ୍ତୃତା, କଥା କହିବା ଓ ଚିନ୍ତାଶୀଳ ମତାମତ ଦେବାରେ ସେ ପଟୁ ହୋଇ ଯାଇଥିଲା ।

ସେ ଏକାଦଶ ଶ୍ରେଣୀ ପଢୁଥିବାବେଳେ ୧୯୬୭ ମସିହାରେ ଓଡ଼ିଶାରେ ନିର୍ବାଚନ ହେଲା । ଆମକୁ ପାଠ ପଢ଼େଇଥିବା ଆମ ସ୍କୁଲର ସାର୍ (ଶ୍ରୀଯୁକ୍ତ) ବିଶ୍ୱନାଥ ମଳିକ ସରକାରୀ ଚାକିରୀ ଛାଡ଼ି ପ୍ରଜା ସୋସାଲିଷ୍ଟ ପାର୍ଟି ଟିକଟରେ ବିଧାନ ସଭା ପାଇଁ ଲଢ଼ିଲେ ।

ଘଣ୍ଟଘର ଚିହ୍ନରେ ଭୋଟଦେବାକୁ ପ୍ରଚାର ଜୋର୍‌ଦାର୍ ଚାଲିଥାଏ । ଆମେ ଦେଖୁଛୁ, ଏ ପ୍ରଚାରରେ କିଶୋର ବୟସର ସେଇ ହାଇସ୍କୁଲ୍ ଛାତ୍ର ବୈକୁଣ୍ଠ ମଞ୍ଚଉପରେ ମାଇକ୍‌ପାଖେ ଠିଆହୋଇ ଦେଶ, ଜାତି, ରାଜନୀତି ଇତ୍ୟାଦି ସମ୍ବନ୍ଧରେ ଅନର୍ଗଳ ଭାଷଣ ଦେଉଥାଏ, ଆଉ ଅଜସ୍ର ସ୍ୱୀକୃତିର ପ୍ରମାଣଭାବେ ତାଳି ବର୍ଷୁଥାଏ ଶ୍ରୋତାମହଲରୁ ।

ଆମ ଗାଆଁର ଆମ ଗୁରୁ ବିଶ୍ୱନାଥ ସାର୍ ଜିତିଗଲେ । ବୈକୁଣ୍ଠ ସମସ୍ତ ରାଜନୈତିକ ସଂପୃକ୍ତି ଓ ପାଠପଢ଼ାରେ ଅବହେଳା ସତ୍ତ୍ୱେ ପ୍ରଥମ ଶ୍ରେଣୀରେ କେବଳ ନୁହେଁ, ପାଖାପାଖି ପ୍ରଥମ ୨୦ ଜଣଙ୍କ ଭିତରେ ନମ୍ବର ରଖି ମାଟ୍ରିକ୍ ପାଶ୍ କଲା । ସେତେବେଳେ ଘରୋଇ ହେଲେ ମଧ୍ୟ ଓଡ଼ିଶାରେ ଭଦ୍ରକ କଲେଜର ଖୁବ୍ ଖ୍ୟାତିଥିଲା । ବଛା ବଛା ଶିକ୍ଷକମାନଙ୍କ ଦ୍ୱାରା ଉଚ୍ଚମାନର ଶିକ୍ଷାଦାନ ପାଇଁ ଏହି ଅନୁଷ୍ଠାନରେ ପଢ଼ିବାକୁ ସେ ନିଜେ ସ୍ଥିର କଲା । ରେଭେନ୍ସା କଲେଜ ଛାଡ଼ି ଭଦ୍ରକ କଲେଜକୁ ବାଛିବାପଛରେ ତା'ର କ'ଣ କାରଣ ଥିଲା, ଆମେ ଜାଣିନୁ । ସେତେବେଳକୁ ତା' ସିଦ୍ଧାନ୍ତକୁ ଯୁକ୍ତିଦ୍ୱାରା ବଦଳେଇବାର ତାକତ୍ ଆମର ନଥିଲା ।

ମୁଁ କେଉଁଝର ବିଜ୍ଞାନ କଲେଜରେ ବିଜ୍ଞାନରେ ଦୁଇବର୍ଷ ପଢ଼ିବାପରେ କଳାଶ୍ରେଣୀକୁ ପାଠ ବଦଳେଇବା ବେଳେ ବୈକୁଣ୍ଠ ଭଦ୍ରକରେ ପହଞ୍ଚିଲା ବିଜ୍ଞାନ ପଢ଼ିବାକୁ । ସେତେବେଳକୁ ବାମପନ୍ଥୀ ରାଜନୀତି ସହ ମୋର ସାମାନ୍ୟ ସଂପୃକ୍ତି ଆରମ୍ଭ ହୋଇଥାଏ । ତା'ଛଡ଼ା ପିଲାବେଳୁ ଆମ ଅଞ୍ଚଳର ମହାନ୍ ଶିକ୍ଷକ, ବଡ଼ଭାଇ, ମାର୍ଗଦର୍ଶକ, ସ୍ୱାଧୀନ ଚିନ୍ତନର ଅଦ୍‌ଭୁତ ମଣିଷ ଗୟାଧର ଭାଇଙ୍କ ପ୍ରଭାବ ଆମ ଉପରେ କିଛି କିଛି ପଡ଼ିଥାଏ । ଶ୍ରୀଯୁକ୍ତ ଗୟାଧର ରାଉତ, ଆମ ଅଞ୍ଚଳରେ ନୁହେଁ, ଓଡ଼ିଶାରେ ଏକ ପରିଚିତ ନାଆଁ । ଖୋର୍ଦ୍ଧା ପ୍ରାଣନାଥ ମହାବିଦ୍ୟାଳୟରେ ପ୍ରାଣୀବିଜ୍ଞାନ ପଢ଼ାଉଥିବା ଲୋକ, ଏବେ ବି ନିଜ ହାତରେ ଧୋତି କୁରୁତା ସଫାକରି ପିନ୍ଧନ୍ତି । ପ୍ରତିକଥାରେ ଆଦର୍ଶର ବାଟ ଦେଖାନ୍ତି । ସେବେଳ କଥା ଛାଡ଼ନ୍ତୁ, ଏବେ ବି ସେ ବ୍ୟକ୍ତିତ୍ୱର ନାଆଁ ଧରିଲେ ଭକ୍ତି ଆସିଯାଏ, କିଛି ଶ୍ରଦ୍ଧାଯୁକ୍ତ ଭୟ ମଧ୍ୟ । ବୈକୁଣ୍ଠ ମଧ୍ୟ ଭଦ୍ରକରେ ପଢ଼ିବା ଭିତରେ ବାମପନ୍ଥୀ ଚିନ୍ତାଧାରାରେ ସମ୍ପୂର୍ଣ୍ଣ ଦୀକ୍ଷିତ ହୋଇଯାଇଥିଲା । ସେତେବେଳେ ଭଦ୍ରକ କଲେଜ ଛାତ୍ର ସଂସଦର ସଭାପତି ଭାବେ ସେହି କଲେଜ ସରକାରୀ ହେବା ପୂର୍ବରୁ ଯେଉଁ ଲଢ଼େଇ ଚାଲିଥିଲା, ସେଥିରେ ତା'ର ଭୂମିକା ସମ୍ବନ୍ଧରେ ସ୍ୱତନ୍ତ୍ର ଭାବେ ବର୍ଣ୍ଣନା କରାଯାଇପାରେ ।

ଏସବୁ ଭିତରେ ଆଉ ଜଣେ ଆଜୀବନ ବିପ୍ଳବୀ, ମଣିଷ ସେବାରେ ନିଜକୁ ଉତ୍ସର୍ଗ କରିଥିବା ଚିନ୍ତନଶୀଳ ବ୍ୟକ୍ତିତ୍ୱ ରବି ଦାଶଙ୍କ ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ମିଳିଲା । ନକ୍ସଲବାଡ଼ି ଆନ୍ଦୋଳନକୁ ନୈତିକ ସମର୍ଥନ ଦେଇ ମନମୋହନ ମିଶ୍ର, ରବି ସିଂଙ୍କ ପରି ସ୍ରଷ୍ଟା ଓ ଜନନେତାମାନେ ଯେଉଁ ଧାରା ସୃଷ୍ଟିକଲେ ବୈକୁଣ୍ଠ ପ୍ରତ୍ୟକ୍ଷଭାବେ ସେଥିରେ ସାମିଲ୍ ହୋଇସାରିଥିଲା । ଏବେ ଆମ ପ୍ରିୟ ଚିନ୍ତାଗୁରୁ ରବି ଦା' କଳାହାଣ୍ଡି ଜଙ୍ଗଲ ଭିତରେ ଗରିବ ମଣିଷର ସେବାପାଇଁ ନିଜକୁ ଉତ୍ସର୍ଗ କରିଛନ୍ତି । ତାଙ୍କର ବି ମନେଥିବ, ଯେଉଁଦିନ

ଓଡ଼ିଶା ପୋଲିସ୍ ଦ୍ୱାରା ଧରାହୋଇ ରାଉରକେଲା ଜେଲ୍‌ରେ ଆଠବର୍ଷ କଟେଇବାକୁ ଗଲେ, ସେ ଯେଉଁ ସାଇକେଲ୍‌ଟିରେ ଯାଉଥିଲେ ଓ ପୋଲିସ୍ ତାହା ଜବତ୍ କରିଥିଲା, ତାହା ବୋଧେ ବୈକୁଣ୍ଠର ।

କାହାଣୀର ନାୟକ ବୈକୁଣ୍ଠ, ପରବର୍ତ୍ତୀ ପର୍ଯ୍ୟାୟରେ ଦିଲ୍ଲୀ ସ୍କୁଲ୍ ଅଫ୍ ଇକୋନୋମିକ୍ସରୁ ଡିଗ୍ରୀ ହାସଲ, ସାମ୍ବାଦିକତା କ୍ଷେତ୍ରରେ ପାଠପଢ଼ିବାବେଳୁ ପ୍ରବେଶ, 'ଲୋକାଗ୍ରର' ସାପ୍ତାହିକ ପତ୍ରିକା ପ୍ରକାଶନ, 'ଷ୍ଟ୍ରିପ୍ସ ଏନ୍‌ଗ୍ରେଭର୍ସ' ଛାପାଖାନା ପ୍ରତିଷ୍ଠା, ମଝିରେ ଭୁବନେଶ୍ୱରରୁ ଲୋକସଭା ସଦସ୍ୟପାଇଁ ପ୍ରାର୍ଥୀ ହେବା ଏବଂ ଆହୁରି ଅନେକ କଥା ତା' ଜୀବନ ଖାତାରେ ଲେଖିଥିଲା ସେ । ଦିଲ୍ଲୀରୁ ଫେରି 'ଲୋକାଗ୍ରର' ପ୍ରକାଶନ ପରେ ସୂଚନା ଭବନ (ଆଜିର ଜୟଦେବ ଭବନରେ) ସେତେବେଳେ ସେ ଯେଉଁ ଉନ୍ମୋଚନ ଉତ୍ସବ ଆୟୋଜନ କରିଥିଲା, ସୌଭାଗ୍ୟକ୍ରମେ ମୁଁ ସେ ସଭାରେ ସଭାପତିତ୍ୱ କରୁଥିଲି । ସେ ମଞ୍ଚରେ ପ୍ରଥମ 'ଲୋକାଗ୍ରର' କିଣା ବିକା ହୋଇଥିଲା ଡ : ହରେକୃଷ୍ଣ ମହତାବ ଏବଂ ଡ : ରାଧାନାଥ ରଥଙ୍କ ମଧ୍ୟରେ । ସାକ୍ଷୀ ପଡ଼ିଥିଲେ ନୂଆ କରି ବିଧାୟକ ହୋଇଥିବା କବି ଡ : ପ୍ରସନ୍ନ ପାଟ୍ଟଶାଣୀ । ଦ୍ୱିତୀୟ କପିଟି ମହାନ୍ ସଂଗ୍ରାହକ ଦାଶରଥି ପଟ୍ଟନାୟକ ମଞ୍ଚ ଉପରକୁ ଆସି ସମସ୍ତଙ୍କ ଦସ୍ତଖତ ସହ ନେଇଥିଲେ । ଏବେ ମଧ୍ୟ ତାହା ଉଦୟନାଥ ପାଠାଗାରରେ ସୁରକ୍ଷିତ ।

ସବୁ କଥାଠାରୁ ବଳେଇଗଲା ତା' ଗ୍ଳିଯିବାର ବ୍ୟଥା । ସମାଜକୁ ବଦଳେଇବାର ଅନେକ ସ୍ୱପ୍ନ ହଠାତ୍ କେତେବେଳେ ଯେ ଭାଙ୍ଗିଗଲା ଜାଣିହେଲାନି । ଏକ ଲଢୁଆ ମଣିଷ, ଯେ କଥା କହିଲେ ଅନେକ ଶୁଣୁଥିଲେ, ତା କହିବା ବନ୍ଦ ହୋଇଗଲା । ପାଠ ପଢ଼ିବା ବେଳେ ଦୁଇଥର ଗ୍ଳନ୍‌ସେଲର୍ ଡିବେଟ୍‌ରେ ପରସ୍କୃତ ହୋଇଥିବା ପିଲା, ପାଠ ପଢ଼େଇବାକୁ ସମାଜ ଆଡ଼କୁ ଦୃଷ୍ଟିଦେବାବେଳକୁ କାହିଁକି କେଜାଣି ନୈରାଶ୍ୟ ଛୁଇଁଦେଲା ତା' ମନକୁ । ଜାତି-ଯୌତୁକ-ବିହୀନ ବିବାହ, ସମାଜରେ ଭେଦଭାବର ଦୂରୀକରଣ, ସାରା ବିଶ୍ୱର ପ୍ରତିଟି ଘଟଣା ଅଘଟଣ ବିଷୟରେ ସ୍ୱଷ୍ଟ ଚିନ୍ତନ, ଆଦର୍ଶକୁ ଆଧାରକରି ବଞ୍ଚିବାର ସଂଗ୍ରାମ, ଏମିତି ବୈକୁଣ୍ଠ ସମ୍ବନ୍ଧରେ ଅନେକ ଘଟଣାର ସ୍ମୃତି ସବୁକୁ ଲେଖିବସିଲେ ଏକ ଜୀବନୀ ନୁହେଁ, ବରଂ ଏକ ମହାନ୍ ଉପନ୍ୟାସ ହୋଇଯିବ । ହେଲେ ସେ ଗଲା, କହିକରି ଗଲାନି । ତାକୁ କେନ୍ଦ୍ରକରି ଆମେ କେତେ କଥା ଭାବିଥିଲୁ, କଥା ହୋଇଥିଲୁ, ସବୁ କରିବୁ; ହେଲେ ସବୁ ଅଧାବାଟରେ ରହିଗଲା । କଥାରେ, କାମରେ, ବୁଦ୍ଧିରେ, ସବୁଥିରେ ଆମକୁ ପଛରେ ପକେଇ ଦେଇଥିଲା; ଏବେ ଗଲାବେଳେ ବି ଆମକୁ ପଛରେ ଛାଡ଼ିଗଲା ।

ଜାଣିନି ସେମିତି ମଣିଷଟିଏ ମିଳିବ କି ନାହିଁ, ଯାହା ଏ ସମୟ ପାଇଁ, ଆମପାଇଁ ସାଧାରଣରୁ ଅସାଧାରଣ ହେବାର ଉଦାହରଣ ହୋଇପାରିବ ।

ଅଧ୍ୟକ୍ଷ, ଓଡ଼ିଆ ଭାଷା ପ୍ରତିଷ୍ଠାନ



# ପ୍ରତିଭାର ଅନ୍ୟନାମ: ବୈକୁଣ୍ଠ ବିଶ୍ୱାଳ

**ସନ୍ତୋଷ ଦାସ**

ଯେଉଁମାନଙ୍କ ବ୍ୟକ୍ତିତ୍ୱ ଓ ସାହଚର୍ଯ୍ୟ ମୋ ଜୀବନର ଗତିଧାରାକୁ ପ୍ରଭାବିତ କରିଛି, ସେମାନଙ୍କ ମଧ୍ୟରେ ବୈକୁଣ୍ଠବାବୁ ଅନ୍ୟତମ । ଜଣେ କନିଷ୍ଠ ସହକର୍ମୀ ଭାବେ ତାଙ୍କ ସହ କାମ କରିବାର ସୁଯୋଗ ମୋତେ ମିଳିଥିଲା । ସମୟଟି ହେଉଛି ୧୯୭୦ ଜାନୁଆରୀରୁ ୧୯୭୧ ମଇ । ସେତେବେଳେ ଆମେ ଭଦ୍ରକ କଲେଜର ଛାତ୍ରଥିଲୁ । ସେ ମୋଠାରୁ ଦୁଇଟି ବ୍ୟାଚ୍ ଉପରେ ପଢୁଥିଲେ ।

ବୈକୁଣ୍ଠ ବାବୁଙ୍କ ବ୍ୟକ୍ତିତ୍ୱ ଏପରି ଆକର୍ଷଣୀୟ ଥିଲା ଯେ ତଳ ଶ୍ରେଣୀରେ ପଢୁଥିବା ଜଣେ ଛାତ୍ର ଯଦି ଆକସ୍ମିକ ଭାବେ ତାଙ୍କ ସହ ଦୁଇ ଚାରିପଦ କଥା ହେବାର ସୁଯୋଗ ପାଉଥିଲା, ସେ ନିଜକୁ ଧନ୍ୟ ମନେ କରୁଥିଲା । ସେହି ସମୟରେ ସେ ଥିଲେ ଭଦ୍ରକ କଲେଜର ଅଦ୍ୱିତୀୟ ଛାତ୍ରନେତା । ମୋର ଏବେବି ମନେଅଛି ୧୯୭୦ରେ ସେ ଯେତେବେଳେ ଛାତ୍ର ସଂସଦ ନିର୍ବାଚନରେ ସଭାପତି ଭାବେ ନିର୍ବାଚିତ ହେଲେ, ତାଙ୍କୁ ମିଳିଥିଲା ୧୧୭୬ଟି ଭୋଟ ଓ ତାଙ୍କ ନିକଟତମ ପ୍ରତିଦ୍ୱନ୍ଦ୍ୱୀଙ୍କ ଭୋଟ ଥିଲା ୧୫୬ । ତାଙ୍କ ନେତୃତ୍ୱ ଉପରେ ଛାତ୍ର ଛାତ୍ରୀମାନଙ୍କର ପ୍ରଚଣ୍ଡ ଆସ୍ଥା ଥିଲା । ଆଜିକାଲି ପରି ସେତେବେଳେ କଲେଜ ୟୁନିୟନ ନିର୍ବାଚନରେ କଳାଟଙ୍କାର ମହାସମର ଚାଲୁନଥିଲା । ଛାତ୍ର ଫେଡେରେସନ୍ (ଏସ୍.ଏଫ୍.ଆଇ)ପକ୍ଷରୁ ଶିକ୍ଷାବର୍ଷର ଆରମ୍ଭରେ ଛାତ୍ରଛାତ୍ରୀ ମାନଙ୍କୁ ସ୍ୱାଗତ ଜଣାଇ ଏକ ଲିଫ୍‌ଲେଟ୍ ଦିଆଯାଉଥିଲା । ନିର୍ବାଚନ ଘୋଷଣା ହେବାପରେ ପ୍ରକାଶ ପାଉଥିଲା ସଂଗଠନର 'ନିର୍ବାଚନ ଇସ୍ତାହାର' । ନିର୍ବାଚନର ଦିନକ ପୂର୍ବରୁ ସଂଗଠନର ସମସ୍ତ ପ୍ରାର୍ଥୀଙ୍କ ନାମ ଉଲ୍ଲେଖ ଥାଇ ଏକ 'ପାନେଲ୍ କାର୍ଡ଼' ଦିଆଯାଉଥିଲା । ପୋଷ୍ଟର, ବ୍ୟାନର, କାର୍ଡ଼ ଆଦିକୁ ସଂଗଠନ ପକ୍ଷରୁ ବିରୋଧ କରାଯାଉଥିଲା । କ୍ଲାସ୍ ସ୍ପିଚ୍ ଓ ଛାତ୍ରଛାତ୍ରୀମାନଙ୍କୁ ଭେଟି ବ୍ୟକ୍ତିଗତ ଭାବେ ଅନୁରୋଧ କରିବା ଥିଲା ନିର୍ବାଚନ ପ୍ରଚାରର ତରିକା । ବୈକୁଣ୍ଠ ବାବୁଙ୍କ ପ୍ରଚାର କେବଳ କ୍ଲାସ୍‌ସ୍ପିଚ୍ ଓ ହଷ୍ଟେଲ୍ ତଥା ମେସ୍‌କୁ ଯାଇ ଦଳବଦ୍ଧ ପ୍ରଚାର କରିବାବେଳେ ଭାଷଣ ଦେବାରେ ସୀମିତ ଥିଲା ।

ଛାତ୍ର ସଂସଦର ସଭାପତି ହେବା ପୂର୍ବରୁ ହିଁ ତାଙ୍କ ନେତୃତ୍ୱକୁ ଛାତ୍ରଛାତ୍ରୀମାନେ ସ୍ୱୀକାର କରିନେଇଥିଲେ । ସେ ୧୯୭୦-୭୧ ଶିକ୍ଷା ବର୍ଷରେ ସଭାପତି ହୋଇଥିଲେ । ଏହାର ପୂର୍ବବର୍ଷ ଅର୍ଥାତ୍ ୧୯୬୯-୭୦ ଶିକ୍ଷାବର୍ଷରେ କଲେଜ ୟୁନିୟନ ନିର୍ବାଚନ ହୋଇନଥିଲା । ବର୍ଷସାରା ଛାତ୍ର ଆନ୍ଦୋଳନ ଲାଗିରହିବାରୁ ନିର୍ବାଚନ ହୋଇପାରିନଥିଲା । ସେତେବେଳେ ବୈକୁଣ୍ଠବାବୁ ଥିଲେ ଦ୍ୱିତୀୟ ବର୍ଷ ବି.ଏ. ଶ୍ରେଣୀର ଛାତ୍ର । ତାଙ୍କ ଠାରୁ ଆଉ ଏକ ସିନିଅର ବ୍ୟାଚ୍ ଥିଲା । ମାତ୍ର ଆନ୍ଦୋଳନ ପ୍ରସଙ୍ଗରେ ମୁଖ୍ୟ ପ୍ରସ୍ତାବ ଥାଏ ତାଙ୍କର ଓ ସେ ହିଁ ଶେଷକଥା କୁହନ୍ତି । ଏହି ଶେଷକଥା କହିବା ପୂର୍ବରୁ ସେ ସମସ୍ତଙ୍କ

ମତାମତ ଧୈର୍ଯ୍ୟର ସହ ଶୁଣିଥାଆନ୍ତି । ଅନ୍ୟମାନଙ୍କ ଉପାଦେୟ ପରାମର୍ଶକୁ ପ୍ରଶଂସା କରନ୍ତି ଓ ଗ୍ରହଣ କରନ୍ତି । ଯାହା ଗ୍ରହଣଯୋଗ୍ୟ ନୁହେଁ, ତାର ଯୁକ୍ତିଯୁକ୍ତ କାରଣ ଦର୍ଶାଇ ସମସ୍ତଙ୍କୁ ବୁଝାଇଥାଆନ୍ତି । ନିଜର ପ୍ରତିଷ୍ଠାର ଅସଦ୍‌ବ୍ୟବହାର କରି ଔଦ୍ଧତ୍ୟ ପ୍ରଦର୍ଶନ କରିବା ପରିବର୍ତ୍ତେ ସେ ନମ୍ରତାର ସହ ସାନ-ବଡ଼ ସମସ୍ତଙ୍କ ମତାମତକୁ ସମ୍ମାନ ଜଣାଇ ଏହା କରିଥାଆନ୍ତି । ଏହି ଧୈର୍ଯ୍ୟଶୀଳତା, ନମ୍ରତା ଓ ଗଣତାନ୍ତ୍ରିକ ଆଚରଣ ହିଁ ଥିଲା ତାଙ୍କ ନେତୃତ୍ୱର ଅନ୍ତର୍ନିହିତ ଶକ୍ତି ।

ତାଙ୍କ ବ୍ୟକ୍ତିତ୍ୱର ଆଉ ଏକ ଆକର୍ଷଣୀୟ ଦିଗଥିଲା ତାଙ୍କ ପାଖରେ ଥିବା ପ୍ରଚଣ୍ଡ ମେଧାଶକ୍ତି । ସେ ପ୍ରଥମ ବର୍ଷ ଡିଗ୍ରୀ ପରୀକ୍ଷାରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ୧୯୬୮ରେ ଚାନ୍‌ସେଲର୍ ଡିବେଟ୍ ପ୍ରତିଯୋଗିତା (ଓଡ଼ିଆ)ରେ ସେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକ ବିଜେତା ହେବାର କୃତିତ୍ୱ ହାସଲ କରିଥିଲେ । ସେ ପୁସ୍ତକକୀଟ ନଥିଲେ । ତାଙ୍କ ସମସାମୟିକ ଅନ୍ୟାନ୍ୟ ମେଧାବୀ ଛାତ୍ରମାନଙ୍କଠାରୁ ଏଇଟା ଥିଲା ତାଙ୍କର ଭିନ୍ନତା । ମୋର ଆଜିର ବିଚାରବୋଧକୁ ନେଇ ମୁଁ ଏତିକି କହିବି ଯେ ତାଙ୍କର ଏହି ମେଧା ସହିତ ଯଦି ଅଧ୍ୟବସାୟର ସମନ୍ୱୟ ଘଟିଥାଆନ୍ତା, ତେବେ ମେଧା ଅଧିକ ବିକଶିତ ହୋଇପାରିଥାଆନ୍ତା ।

ସେ କେବଳ ତର୍କ ପ୍ରତିଯୋଗିତାରେ ପୁରସ୍କାର ପାଇବା ଭଳି ଜଣେ ବକ୍ତା ନଥିଲେ । ତାଙ୍କର ଜ୍ଞାନ ଭଣ୍ଡାର ଥିଲା ଖୁବ୍ ବ୍ୟାପକ । ପ୍ରତ୍ୟେକଟି ଘଟଣା ଓ ସେ ସମ୍ପର୍କୀୟ ଅନୁଭବକୁ ପ୍ରକାଶ କରିବା ପାଇଁ ଠିକ୍ ଶବ୍ଦ ନିର୍ବାଚନ କରିବା ଓ ଉପଯୁକ୍ତ ଶବ୍ଦ ସଂଯୋଜନା କରି ବାକ୍ୟ ଗଠନ କରିବାରେ ତାଙ୍କର ଅସାଧାରଣ ଦକ୍ଷତା ଥିଲା । ବଳିଷ୍ଠ ଯୁକ୍ତି ଓ ଆବଶ୍ୟକ ତଥ୍ୟର ଉପସ୍ଥାପନା ସଂଗକୁ ଉଭୟ ଯୁକ୍ତିବାଦୀ ମାନସିକତା ଓ ଭାବପ୍ରବଣତା ପ୍ରତି ସେ ତାଙ୍କ ଭାଷଣରେ, ପ୍ରବନ୍ଧରେ ଓ କବିତାରେ ଆବେଦନ ଜଣାଇ ପାରୁଥିଲେ । ଏହା କିଛି ମାମୁଲି ଧରଣର ସୃଜନଶୀଳତା ନଥିଲା ।

ମୁଁ ୧୯୬୯ ଭଦ୍ରକ କଲେଜରେ ପ୍ରି-ୟୁନିଭରସିଟି ବିଜ୍ଞାନ (ଦ୍ୱାଦଶ ଶ୍ରେଣୀ)ରେ ନାମ ଲେଖାଇଥିଲି । ମେଟ୍ରିକ୍ ପରୀକ୍ଷା ପରେ ଯେଉଁ ଛୁଟି ମିଳିଥିଲା ସେହି ସମୟରେ ମୋର ଜଣେ ଶିକ୍ଷକ (ମାଧବାନନ୍ଦ ଷଡ଼ଙ୍ଗୀ)ଙ୍କ ଦ୍ୱାରା ପ୍ରଭାବିତ ହୋଇ ମୁଁ କମ୍ୟୁନିଜିମ୍‌ର ଆଦର୍ଶକୁ ଗ୍ରହଣ କରିସାରିଥିଲି । ୧୯୬୦ ଦଶକଟି ଥିଲା ଆନ୍ଦୋଳନ ଓ ସଂଗ୍ରାମରେ ଉତ୍ତାଳଥିବା ଏକ ସମୟ । ଆମେରିକା ସାମ୍ରାଜ୍ୟବାଦ ବିରୋଧରେ ସଂଗ୍ରାମକରି ଭିଏତ୍‌ନାମ, କାମ୍ବୋଡ଼ିଆ ଓ ଲାଓସର ଜନଗଣ ବିଜୟ ପଥରେ ଅଗ୍ରସର ହେଉଥାଆନ୍ତି । ଭାରତରେ ଚାଲିଥାଏ ନକ୍‌ସଲପନ୍ଥୀମାନଙ୍କ ଚାଞ୍ଚଲ୍ୟସୃଷ୍ଟିକାରୀ କାର୍ଯ୍ୟକଳାପ । ଏସବୁ ମୋର ତରୁଣ ମନକୁ ବେଶ୍ ପ୍ରଭାବିତ କରୁଥାଏ । ସି.ପି.ଆଇ, ସି.ପି.ଆଇ.(ଏମ୍) ଓ ସି.ପି.ଆଇ. (ଏମ୍.ଏଲ୍) ମଧ୍ୟରେ ଥିବା ରାଜନୈତିକ ଓ ମତାଦର୍ଶଗତ ପାର୍ଥକ୍ୟକୁ ବୁଝିବାର ସାମର୍ଥ୍ୟ

ସେତେବେଳେ ମୋର ନଥିଲା । ଆନୁମାନିକ ଭାବେ ଏକ ସରଳ ସୂତ୍ର ପ୍ରୟୋଗକରି ମୁଁ ଭାବୁଥିଲି ସି.ପି.ଆଇ. ହେଉଛି ନରମପନ୍ଥୀ ମାନଙ୍କର, ସି.ପି.ଆଇ. (ଏମ୍) ମଧ୍ୟମପନ୍ଥୀ ମାନଙ୍କର ଓ ସି.ପି.ଆଇ. (ଏମ୍.ଏଲ୍) ହେଉଛି ଚରମପନ୍ଥୀମାନଙ୍କର ଦଳ । ମାତ୍ର ସମସ୍ତଙ୍କର ଲକ୍ଷ୍ୟ ସମାନ । ତେବେ ଅଧିକ ଲଢୁଆ ପଦ୍ଧତିର ଆଶ୍ରୟ ନେଇ ଅଳ୍ପ ସମୟ ମଧ୍ୟରେ ସମାଜବାଦ ପ୍ରତିଷ୍ଠା କରିବାକୁ ହେଲେ ନକ୍ସଲପନ୍ଥୀଙ୍କ ରାସ୍ତା ଧରିବାକୁ ହେବବୋଲି ମୋ ମନରେ ବିଶ୍ୱାସ ସୃଷ୍ଟି ହୋଇଥିଲା ।

ଭଦ୍ରକ କଲେଜରେ ପାଦଦେବାପରେ ଖୋଜିଲି ଏହି ନକ୍ସଲପନ୍ଥୀଙ୍କ ସଂଗଠନକୁ । ଶୁଣିଲି, ସେମାନଙ୍କର କୌଣସି ସଂଗଠନ ନାହିଁ; ମାତ୍ର ଛାତ୍ର ଫେଡେରେସନ୍‌ର ନେତୃତ୍ୱ ନେଉଥିବା ବୈକୁଣ୍ଠ ବାବୁ ପ୍ରମୁଖ ଏହି ନକ୍ସଲପନ୍ଥୀ ବିଚାରବୋଧର ସମର୍ଥକ । ମୋର ବନ୍ଧୁ ମାନସ ରାୟ ମୋର ଅନୁରୋଧ ରକ୍ଷାକରି ମୋତେ ଛାତ୍ର ଫେଡ଼େରେସନ୍‌ର ସଭ୍ୟଭୁକ୍ତ କଲେ ଓ ବୈକୁଣ୍ଠ ବାବୁଙ୍କ ସହ ମୋର ପରିଚୟ କରାଇଦେଲେ । ଛାତ୍ର ଫେଡ଼େରେସନ୍ ପାଇଁ ସକ୍ରିୟଭାବେ କାମକରିବା ଓ ନକ୍ସଲ୍‌ବାଦକୁ ଦୃଢ଼ତାର ସହ ସମର୍ଥନ କରିବା ଯୋଗୁଁ ମୁଁ ବୈକୁଣ୍ଠବାବୁଙ୍କର ନିକଟତର ହୋଇପାରିଥିଲି ।

ସେତେବେଳେ ମୋର ଚପଳ ମନରେ ମୁଁ ବିଚାର କରୁଥିଲି ଯେ ଚରମ ପନ୍ଥା ହେଉଛି ବିପ୍ଳବୀ ମାର୍ଗ । ମୋ ପାଖରେ ଥିବା ଏହି ତ୍ରୁଟି ସଂଶୋଧନ ହେବା ପାଇଁ କିଛି ବର୍ଷ ଲାଗିଥିଲା । ବୈକୁଣ୍ଠ ବାବୁ ହିଁ ପ୍ରଥମେ ଏହି ତ୍ରୁଟିକୁ ଚିହ୍ନଟ କରି ମୋତେ ସଂଶୋଧନ କରିବା ପାଇଁ ଚେଷ୍ଟା କରିଥିଲେ । କେବଳ ମୁଁ ନୁହେଁ, ଆମ ଭଦ୍ରକ କଲେଜରେ ସେତେବେଳେ କାର୍ଯ୍ୟକରୁଥିବା ନକ୍ସଲ୍‌ପନ୍ଥୀ ଗୋଷ୍ଠୀର ପ୍ରାୟ ଅଧିକାଂଶ ସଦସ୍ୟ ଏହି ଧାରଣାର ବଶବର୍ତ୍ତୀ ହୋଇଥିଲେ । ବୋଧହୁଏ, ବୈକୁଣ୍ଠ ବାବୁ ନଥିଲେ ଆମେ ବିପ୍ଳବୀ କାର୍ଯ୍ୟ ନାମରେ କିଛି କିଛି ଅନାବଶ୍ୟକ ତଥା ହିଂସାତ୍ମକ କାର୍ଯ୍ୟରେ ଲିପ୍ତ ହୋଇପଡ଼ିଥାଆନ୍ତୁ । ସେ କିପରି ଠିକ୍ ଭାବେ ଏକ ହିଂସାତ୍ମକ ମୁକାବିଲାକୁ ଏଡ଼େଇ ଦେଇ ପାରିଥିଲେ ତାର ଅଭିଜ୍ଞତା ମୁଁ ନିମ୍ନରେ ଉଲ୍ଲେଖ କରୁଛି ।

ଦିନେ ଦେଖିବାକୁ ପାଇଲୁ ଆନନ୍ଦମାର୍ଗୀ ମାନେ ପ୍ରିନ୍ସପାଲ୍‌ଙ୍କ ପାଖରୁ ଅନୁମତି ନେଇ ଏକ ହଲ୍‌ରେ ସଭା କରୁଛନ୍ତି । ଯଦିଓ ଆମ କଲେଜରେ ସେତେବେଳେ ଦୁଇ-ଚାରି ଜଣ ଛାତ୍ର 'ଆନନ୍ଦ ମାର୍ଗ' ସହ ସଂପୃକ୍ତ ଥିଲେ ତଥାପି ଯେଉଁ ସଭାଟି ହେଉଥିଲା, ତାହା କୌଣସି ଛାତ୍ର କିମ୍ବା ଶିକ୍ଷକ ସଂଗଠନ ପକ୍ଷରୁ ହେଉନଥିଲା । ଆମେ ଜାଣିଥିଲୁ, ଆନନ୍ଦ ମାର୍ଗୀମାନେ ହେଉଛନ୍ତି ସି.ଆଇ.ଏ.ର ଦଲାଲ୍ । ସେମାନେ ନରଘାତକ, ମଣିଷର ଖପୁରୀଧରି ନୃତ୍ୟ କରନ୍ତି । କିଛି ଦିନ ପୂର୍ବରୁ ସେମାନେ ଜ୍ୟୋତି ବସୁଙ୍କୁ ହତ୍ୟାକରିବା ପାଇଁ ପାଟନାରେ ତାଙ୍କ ଘରକୁ ଗୁଳି ଚଳାଇଥିଲେ । ଆମେ ସବୁ ଆନନ୍ଦମାର୍ଗୀଙ୍କ ସଭା ପାଖରେ ପହଞ୍ଚି ସଭା ବନ୍ଦ କରିବାକୁ କହିଲୁ । ଆୟୋଜକମାନଙ୍କ ସହ ଆମର ଯୁକ୍ତିତର୍କ ଚାଲୁଥିବାବେଳେ ଆମ ଭିତରୁ କେହିଜଣେ ବିଦ୍ୟୁତ ସଂଯୋଗ ଛିନ୍ନ କରିଦେଇଥିଲା । ଆମେ

ସଭା ଗୃହଟିକୁ ଘେରାଉ କରିଦେବାରୁ ଆନନ୍ଦମାର୍ଗୀମାନେ ଅସହାୟ ହୋଇପଡ଼ିଲେ । ସେମାନଙ୍କ ପକ୍ଷରୁ କିଛି ହିଂସାକାଣ୍ଡ ହୋଇପାରେ ଏହି ଆଶଙ୍କାକରି ଛାତ୍ରମାନେ ମଧ୍ୟ ପାଲଟା ପ୍ରସ୍ତୁତି ନେଇ ସାରିଥିଲେ । ପରିସ୍ଥିତି ଥିଲା ଉତ୍ତେଜନାମୟ ।

ବୈକୁଣ୍ଠ ବାବୁଙ୍କ ଅନୁପସ୍ଥିତିରେ ଏ ଘଟଣା ଘଟୁଥିଲା । ସେ ଭଦ୍ରକରେ ପହଞ୍ଚିବା ମାତ୍ରେ ଏ ଖବର ପାଇ ଘଟଣାସ୍ଥଳକୁ ଆସିଲେ । ସେ କ'ଣ କହିବେ ତାହା ଜାଣିବାକୁ ସମସ୍ତେ ରହିଁଥିଲେ । ସେ କହିଲେ : (୧) ଆନନ୍ଦମାର୍ଗ ପରି ଏକ ହିଂସ୍ର ତଥା ଅଣଛାତ୍ର ଓ ଅଣ-ଶିକ୍ଷକ ସଂଗଠନକୁ କଲେଜରେ ସଭା କରିବାକୁ ଅନୁମତି ଦେଇ ଅଧ୍ୟକ୍ଷ ଭୁଲ କରିଛନ୍ତି; (୨) ଏହି ସଭାକୁ ବିରୋଧ କରାଯିବା ଯଥାର୍ଥ; ମାତ୍ର ବିଦ୍ୟୁତ୍ ସଂଯୋଗ ଛିନ୍ନକରି ସଭା ବନ୍ଦକରିବା ଠିକ୍ ନୁହେଁ; (୩) ଆମକୁ ଆନନ୍ଦ ମାର୍ଗ ବିରୋଧରେ ପ୍ରଚାର ଅଭିଯାନ ନେବାକୁ ହେବ ଓ ପ୍ରିନ୍‌ସିପାଲ୍‌ଙ୍କ ଅନୁମତି ପ୍ରଦାନ ବିରୋଧରେ ପ୍ରତିବାଦ ଜଣାଇବାକୁ ହେବ ।

ବୈକୁଣ୍ଠ ବାବୁଙ୍କ ଏହି ଘୋଷଣା ଆମ ମନକୁ ଅଧା ପାଇଲା ଓ ଅଧା ପାଇଲା ନାହିଁ । ମୁଁ ଭାବିଲି ଏଟା 'ସାଲିସ୍' ହୋଇଗଲା, ହେଲେ ତାଙ୍କ ସିଦ୍ଧାନ୍ତକୁ ମାନିନେଲୁ । ତା ପର ଦିନ ଆନନ୍ଦମାର୍ଗ ଉପରେ ବୈକୁଣ୍ଠବାବୁ ନିଜେ କ୍ଲାସ୍ ସ୍ପିଚ୍ କଲେ । ପ୍ରିନ୍‌ସିପାଲ୍‌ଙ୍କ ଅଫିସ୍ ଆଗରେ ବିକ୍ଷୋଭ ପ୍ରଦର୍ଶନ କରାଗଲା । ପ୍ରିନ୍‌ସିପାଲ୍ ପ୍ରତିଶ୍ରୁତି ଦେଲେ ଯେ ଭବିଷ୍ୟତରେ ଏପରି ସଭାପାଇଁ ସେ ଆଉ ଅନୁମତି ଦେବେ ନାହିଁ । ଏହି ଅଭିଜ୍ଞତାରୁ ମୋତେ ଶିକ୍ଷା ମିଳିଲା ଯେ ମୁଷ୍ଟିମେୟ ଛାତ୍ରଙ୍କୁ ନେଇ କୌଣସି ହିଂସାତ୍ମକ ମୁକାବିଲା କରିବା ଅପେକ୍ଷା ଶହ ଶହ ଛାତ୍ରଙ୍କୁ ଉଦ୍‌ବୁଦ୍ଧକରି ଆନ୍ଦୋଳନ କରିବା ଏକ ବଳିଷ୍ଠ ପଦକ୍ଷେପ । ଏହି ଦ୍ୱିତୀୟ ପନ୍ଥାଟି ଅଧିକ ଫଳପ୍ରଦ ହୋଇଥାଏ ।

ଗଣ ସଂଗଠନ କରିବା ଦ୍ୱାରା ଲୋକଙ୍କୁ ଭାଗ ଭାଗ କରାଯାଉଛି ଓ କଲେଜ ୟୁନିୟନ ନିର୍ବାଚନ ଲଢ଼ିବା ମଧ୍ୟ ଏକ ଅଣ-ବିପ୍ଳବୀ ତଥା ସଂଶୋଧନବାଦୀ କାର୍ଯ୍ୟ ବୋଲି ଆମ ସହ ଯୋଗାଯୋଗ ରଖୁଥିବା ନକ୍‌ସଲପନ୍ଥୀ ନେତାମାନେ ଆମ ଭଦ୍ରକ ଶାଖାକୁ ସମାଲୋଚନା କରୁଥିଲେ । ଛାତ୍ର ଫେଡେରେସନ୍ ବା ଏସ୍.ଏଫ୍.ଆଇ. ପରିତ୍ୟାଗ କରିବାକୁ ଓ କଲେଜ ନିର୍ବାଚନରେ ଅଂଶଗ୍ରହଣ ନ କରିବାକୁ ସେମାନେ ଆମ ଉପରେ ଚାପ ପକାଉଥିଲେ । ରବିବାବୁ (ରବି ଦାଶ)ଙ୍କ ବିରୋଧ ଅପେକ୍ଷା ଗଣନାଥ ବାବୁ (ଗଣନାଥ ପାତ୍ର)ଙ୍କ ବିରୋଧ ଥିଲା କଠୋର । ଏହି ବିଚ୍ୟୁତି ପାଇଁ ସେମାନେ ବୈକୁଣ୍ଠ ବାବୁଙ୍କୁ ଦାୟୀ କରୁଥିଲେ । ମାତ୍ର ବୈକୁଣ୍ଠ ବାବୁ ନୀତିଗତ ଭାବେ ସେମାନଙ୍କ ସହ ଦ୍ୱିମତ ନଥିଲେ ।

ତତ୍ତ୍ୱ ଓ ପ୍ରୟୋଗ ମଧ୍ୟରେ ଏହି ଦ୍ୱନ୍ଦ୍ୱରୁ ଆମ ଶାଖାରେ ବିତର୍କର ସୂତ୍ରପାତ ଘଟିଲା । ୧୯୭୧ର ଗ୍ରୀଷ୍ମାବକାଶ ପରେ କଲେଜ ଖୋଲିଲେ ଏହି ପ୍ରଶ୍ନର ସମାଧାନ କରାଯିବାକୁ ସ୍ଥିର ହେଲା ।

କଲେଜ ଖୋଲିବା ବେଳକୁ ମୋ ବ୍ୟତୀତ ଆମ ନକ୍ସଲପନ୍ଥୀ ଗୋଷ୍ଠୀର ଆଉ କେହି ଭଦ୍ରକରେ ନଥିଲେ । ସମସ୍ତେ ଗ୍ରାଜୁଏସନ୍ ଶେଷ କରି ଉଚ୍ଚଶିକ୍ଷା କିମ୍ବା ବୃତ୍ତି ଅନୁସନ୍ଧାନରେ ଭଦ୍ରକ ପରିତ୍ୟାଗ କରିଥିଲେ । କଂଗ୍ରେସ, ଦଳ ପକ୍ଷରୁ ଏସ୍.ଏଫ୍.ଆଇ.କୁ ଦୁର୍ବଳ କରିବା ପାଇଁ ବ୍ୟାପକ ଗୁଣ୍ଡାମୀ ବୈକୁଣ୍ଠ ବାବୁ ଥିବା ସମୟରୁ ହିଁ ଆରମ୍ଭ ହୋଇଥାଏ । ୧୯୭୧-୭୨ ଶିକ୍ଷାବର୍ଷରେ ଛାତ୍ର ସଂସଦ ଅକ୍ତିଆର କରିବା ପାଇଁ କଂଗ୍ରେସ, ଉତ୍କଳ କଂଗ୍ରେସର ଏକ ଅଂଶ ଓ ଜନସଂଘକୁ ନେଇ ମହାମେଣ୍ଟ ଗଠନ କରାଯାଇଥାଏ । ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିବା ରବି ନାରାୟଣ ସେନାପତି (ବର୍ତ୍ତମାନର ସ୍ୱାସ୍ଥ୍ୟ ସଚିବ)ଙ୍କୁ ସଭାପତି ଓ ଖାରବେଳ ସ୍ୱାଇଁଙ୍କୁ ସମ୍ପାଦକ ପ୍ରାର୍ଥୀ କରି ସେମାନେ ନିର୍ବାଚନର ରଣସଜ୍ଜା କରିଥିଲେ । ଏହି ମେଣ୍ଟ ପକ୍ଷରୁ ହିନ୍ଦୁ ସାମ୍ପ୍ରଦାୟିକ ଆବେଦନ ମଧ୍ୟ କରାଯାଉଥିଲା । ପରବର୍ତ୍ତୀ ସମୟରେ ଦେଖାଯାଇଛି ଏହି ମେଣ୍ଟର ଅଧିକାଂଶ ସଂଗଠକ କଂଗ୍ରେସ ତ୍ୟାଗ କରି ବି.ଜେ.ପିରେ ସାମିଲ୍ ହୋଇଛନ୍ତି । ଆମ ସାମନାରେ ଚ୍ୟାଲେଞ୍ଜ ଆସିଲା ଏହି ମେଣ୍ଟକୁ କିପରି ପରାସ୍ତ କରାଯିବ ଏବଂ ଏସ୍.ଏଫ୍.ଆଇ.ର ବିଜୟ ପ୍ରକ୍ରିୟାକୁ ଅବ୍ୟାହତ ରଖାଯିବ । ଏ ସଂଗ୍ରାମରେ ଆମେ ଜୟଯୁକ୍ତ ହେଲୁ । ରବି ନାରାୟଣ ସେନାପତି ଓ ଖାରବେଳ ସ୍ୱାଇଁଙ୍କ ପରାଜୟ ଦ୍ୱାରା ପ୍ରମାଣିତ ହେଲା ଯେ ବୈକୁଣ୍ଠ ବାବୁଙ୍କ ବିଜୟ କେବଳ ଜଣେ ମେଧାବୀ ଛାତ୍ରର ବିଜୟ ନଥିଲା, ଆମର ବିଜୟ ଥିଲା ସଂଗ୍ରାମର ବିଜୟ । ଏହି ସଂଗ୍ରାମର ଆହ୍ୱାନ ଯେତେବେଳେ ଆସିଥିଲା ସେତେବେଳେ ଛାତ୍ର ସଂଗଠନ କରିବା କି ନାହିଁ, ଛାତ୍ର ସଂସଦ ନିର୍ବାଚନରେ ଅଂଶ ଗ୍ରହଣ କରିବା କି ନାହିଁ - ଏହି ବିତର୍କକୁ ପଛରେ ପକାଇ ଦେଇଥିଲୁ । କଲେଜ ୟୁନିୟନ ନିର୍ବାଚନ ପରେ ପୁଣି ଏକ ନକ୍ସଲପନ୍ଥୀ ଗୋଷ୍ଠୀ ଗଠନ କରାଗଲା । ମାତ୍ର ଛାତ୍ର ସଂଗଠନରେ କାମ କରିବା ଓ ଛାତ୍ର ସଂସଦ ନିର୍ବାଚନରେ ଅଂଶ ଗ୍ରହଣ କରିବାକୁ ସି.ପି.ଆଇ (ଏମ୍.ଏଲ୍) ନେତାମାନେ ବିରୋଧ କରୁଥିଲେ । ତତ୍ତ୍ୱ ଓ ପ୍ରୟୋଗ ଭିତରେ ଥିବା ଏହି ଦ୍ୱନ୍ଦ୍ୱ ଯୋଗୁଁ ମୁଁ ଏକ ସିଦ୍ଧାନ୍ତରେ ପହଞ୍ଚି ପାରୁନଥାଏ । ଆମେ ଗଣ ସଂଗଠନ ନକଲେ ଲୋକଙ୍କୁ କିପରି ସଂଗଠିତ କରିବା ଓ ଲୋକଙ୍କ ଭିତରେ କାମକରି ସେମାନଙ୍କୁ ସଂଗଠିତ ନକରି କେତେଜଣ ମୁଷ୍ଟିମେୟ ଲୋକ ଲୁଚିଛପି ଘୁରି ବୁଲିଲେ, ଗୋପନରେ ପୋଷ୍ଟର ମାରିଲେ, ରାତିରେ ପୁଳାଏ ଲିଫ୍‌ଲେଟ୍ କେଉଁଠି ପକାଇଦେଲେ କ'ଣ ବିପ୍ଳବ ସଂଗଠିତ ହୋଇପାରିବ ? ଏହି ପ୍ରଶ୍ନ ବାରମ୍ବାର ମୋ ମନରେ ଉଙ୍କି ମାରୁଥାଏ ।

୧୯୭୨ରେ ପଶ୍ଚିମବଙ୍ଗରେ ଯେତେବେଳେ ଜାଲିଆତି ନିର୍ବାଚନରେ ସି.ପି.ଆଇ.(ଏମ୍) ନେତୃତ୍ୱାଧୀନ ବାମପନ୍ଥୀ ସାଙ୍ଖୁଖ୍ୟକୁ ପରାସ୍ତ କରାଗଲା, ତାପରେ ଭାବିଲି ଏହି ନିର୍ବାଚନରେ ଅଂଶଗ୍ରହଣ କରିବା ଲାଇନ୍‌ଟା ପୁରା ଭୁଲ୍ । ସେତେବେଳକୁ ଭଦ୍ରକ କଲେଜରେ ମଧ୍ୟ ଏସ୍.ଏଫ୍.ଆଇ. ଉପରେ କଂଗ୍ରେସ ଦଳ ପକ୍ଷରୁ ବ୍ୟାପକ ଗୁଣ୍ଡାମୀ ଚାଲୁଥାଏ । ମୁଁ ଏପରି ମାନସିକ ଦ୍ୱନ୍ଦ୍ୱରେ ଥିବାବେଳେ ଭଦ୍ରକର ତତ୍‌କାଳୀନ ସି.ପି.ଆଇ.(ଏମ) ନେତା ନିରାକାର ଜେନା ଓ ଏସ୍.ଏଫ୍.ଆଇ.ର ତତ୍‌କାଳୀନ ରାଜ୍ୟ

ସମ୍ପାଦକ ଜନାର୍ଦ୍ଦନ ପତି ମୋତେ ବୁଝାଉ ଥାଆନ୍ତି । ସେମାନଙ୍କ ପାଖରୁ ଯଦିଓ ମୋର ମନରେ ଥିବା ଅଧିକାଂଶ ପ୍ରଶ୍ନର ଉତ୍ତର ପାଇଥିଲି ତଥାପି କେତୋଟି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ପାଇନଥିଲି । ଏହି ସମୟରେ ବଂଗଳାରୁ ତରୁଣ ସେନଗୁପ୍ତ ନାମକ ଜଣେ ବିଶିଷ୍ଟ ସି.ପି.ଆଇ.(ଏମ୍) ନେତା ଓଡ଼ିଶା ଆସି ଅବସ୍ଥାନ କରୁଥିଲେ । ପଶ୍ଚିମବଂଗରେ ସନ୍ତ୍ରାସ ଚାଲିଥିବାରୁ ତାଙ୍କୁ ନିଜ ଅଞ୍ଚଳ ଛାଡ଼ିବାକୁ ପଡ଼ିଥିଲା । ସେ ହିଁ ମୋର ସମସ୍ତ ପ୍ରଶ୍ନର ଉପଯୁକ୍ତ ଉତ୍ତର ଦେଇ ମୋତେ ବୁଝାଇ ପାରିଲେ । ଏହାପରେ ମୁଁ ଏବଂ ଭଦ୍ରକ କଲେଜରେ ଥିବା ନକ୍ସଲପନ୍ଥୀ ଗୋଷ୍ଠୀଟି ସମ୍ପୂର୍ଣ୍ଣଭାବେ ସି.ପି.ଆଇ. (ଏମ୍)ରେ ଯୋଗଦେଲୁ । ଏ ଘଟଣା ଘଟିବା ବେଳକୁ ବୈକୁଣ୍ଠ ବାବୁ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କରୁଥିଲେ ।

ଏହି ପ୍ରକ୍ରିୟା ମଧ୍ୟ ଦେଇ ଭଦ୍ରକ କଲେଜରେ ବୈକୁଣ୍ଠ ବାବୁଙ୍କ ନେତୃତ୍ୱରେ ଯାହା ପ୍ରଯୋଗ କରାଯାଉଥିଲା, ସେହି ଧାରାକୁ ଅବ୍ୟାହତ ରଖିବାରେ ମୁଁ ସକ୍ରିୟ ଭୂମିକା ପାଳନ କଲି ଓ ଏହି ପ୍ରଯୋଗ ସହ ସଂଗତି ରକ୍ଷା କରୁଥିବା ରାଜନୀତି ଓ ସଂଗଠନରେ ନିଜକୁ ସାମିଲ୍ କଲି । ଭଦ୍ରକ କଲେଜ ପରିତ୍ୟାଗ କରିବା ପରେ ବୈକୁଣ୍ଠ ବାବୁ ପ୍ରଯୋଗର ଏହି ଧାରାରୁ ପୃଥକ୍ ହେଲେ ଓ ଏହି ଧରଣର ପ୍ରଯୋଗ ସହ ସଂଗତି ରକ୍ଷା କରୁନଥିବା ତତ୍ତ୍ୱ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ରହିଲେ । ମୁଁ ଯେହେତୁ ଜାଣିଥିଲି ଯେ ନକ୍ସଲପନ୍ଥୀ ଦଳର ସମୁଦାୟ କାର୍ଯ୍ୟକ୍ରମଟି ଗୋପନୀୟ, ତେଣୁ ସେ କେଉଁ ଗୋଷ୍ଠୀ ସହ ଅଛନ୍ତି ଓ ତାଙ୍କର କାର୍ଯ୍ୟକଳାପ କ'ଣ ସେ ବିଷୟରେ ତାଙ୍କୁ କେବେ କିଛି ପଚାରିନାହିଁ । ମୁଁ ପୂର୍ବରୁ ଦର୍ଶାଇଛି ଯେ ତାଙ୍କ ଚରିତ୍ରରେ ଗଣତାନ୍ତ୍ରିକ ସଂସ୍କୃତିର ବୈଶିଷ୍ଟ୍ୟ ରହିଥିଲା । ସେହି ବିଚାରବୋଧ ନେଇ ସେ ମଧ୍ୟ ମୋତେ କେବେ ପ୍ରଶ୍ନ କରିନାହାଁନ୍ତି ଯେ ମୁଁ କାହିଁକି ସି.ପି.ଆଇ(ଏମ୍)ରେ ଯୋଗଦେଲି ।

ମୁଁ ସବୁବେଳେ ତାଙ୍କୁ ସମ୍ମାନ କରିଆସିଛି ଓ ତାଙ୍କ ପାଖରୁ ମଧ୍ୟ ପାଇଛି ସ୍ନେହ । ତାଙ୍କ ପ୍ରତିଭା ଯେତେବେଳେ ବିକାଶ ପରିବର୍ତ୍ତେ ସ୍ଥାଣୁତାର ଶିକାର ହେଲା, ତାହା କେବଳ ମୋତେ କାହିଁକି ତାଙ୍କର ବହୁ ପ୍ରଶଂସକଙ୍କୁ ବ୍ୟଥିତ କରିଛି । ଅଂଶୁଘାତରେ ଆକସ୍ମିକ ଭାବେ ତାଙ୍କ ଜୀବନର ଅବସାନ ଘଟିବା ଥିଲା ମୋ ପାଇଁ ଖୁବ୍ ବେଦନାଦାୟକ ।

ତାଙ୍କ ସ୍ମୃତି ପ୍ରତି ମୁଁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ତାଙ୍କ ବିୟୋଗର ଦୁଃଖକୁ କେବେବି ପାସୋରି ପାରୁନଥିବା ସତିଆ ନାନୀ (ବୈକୁଣ୍ଠ ବାବୁଙ୍କ ପତ୍ନୀ ଶ୍ରୀମତୀ ସତ୍ୟଭାମା ନାଥଶର୍ମା), ତାଙ୍କ ଝିଅ ଚେତନା, ପୁଅ ଚିନ୍ମୟ ଓ ତାଙ୍କ ଶୋକସନ୍ତପ୍ତ ପରିବାରରେ ପରବର୍ତ୍ତୀ ସମୟରେ ସଦସ୍ୟତା ଗ୍ରହଣ କରିଥିବା କ୍ୱାଇଁ ଅନୀଲଙ୍କ ଦୁଃଖ ସହ ନିଜକୁ ସାମିଲ୍ କରୁଛି ।

ରାଜ୍ୟ ସମ୍ପାଦକ, ସି.ପି.ଆଇ (ଏମ୍)



# ଭଦ୍ରକରେ ବୈକୁଣ୍ଠ ବିଶ୍ୱାଳ
# କେତୋଟି କଥା

*ଦୀନେଶ୍ ଭଟ୍ଟାଚାର୍ଯ୍ୟ*

ମାଟ୍ରିକ୍ ପରୀକ୍ଷାରେ ୬୦୦ରୁ ଅଧିକ ନମ୍ବର ରଖି ରେଭେନ୍‌ସା କଲେଜରେ ନପଢ଼ି ଭଦ୍ରକ ଆସିବାର ଉଦ୍ଦେଶ୍ୟ ଶ୍ରୀ ବିଶ୍ୱାଳଙ୍କୁ ପଚାରିବାପାଇଁ ମୁଁ ତାଙ୍କୁ ପଛବେଞ୍ଚକୁ ଡାକିଲି । Physics କ୍ଲାସ୍ ଚାଲିଥାଏ । କ୍ଲାସ ସରିଲେ ଆସିବି ବୋଲି ଖବର ଦେଲେ । ସେଦିନଠାରୁ ଆମେ ପ୍ରାୟ ପଛବେଞ୍ଚରେ ବସୁ ଓ ଭଲମନ୍ଦ କଥାବାର୍ତ୍ତା ହେଉ । ମୋତେ ଲାଗିଲା ବୈକୁଣ୍ଠ ଜଣେ ସାଧାରଣ ପ୍ରତିଭା ଥିବା ପିଲାନୁହେଁ । ତାର ଅନ୍ତର୍ନିହିତ ପ୍ରତିଭାର ସୁରାକ ଆସ୍ତେ ଆସ୍ତେ କଲେଜର ସବୁ କ୍ଷେତ୍ରରେ ବ୍ୟାପ୍ତ ହେଲା । ସିନିୟର୍ ଛାତ୍ରମାନେ ତାଙ୍କ ସହିତ ଦିନକୁ ଦିନ ଅଧିକ ସମ୍ପର୍କରେ ଆସିଲେ । ବ୍ୟସ୍ତବହୁଳ ଜୀବନ ତାଙ୍କର ଆରମ୍ଭ ହେଲା । ବ୍ୟସ୍ତତା ମଧ୍ୟରେ ଦୂରେଇଯିବା ପରିବର୍ତ୍ତେ ଆମ୍ଭେ ଅଧିକ ନିକଟତର ହେଲୁ ।

ପ୍ରି-ୟୁନିଭର୍ସିଟି ର ଇଂରାଜୀ କ୍ଲାସ ନେଉଥିଲେ ପ୍ରଫେସର୍ ହୁମାୟୁଁ କବୀର । ଚିରାଚରିତ ଭାବରେ ପଛବେଞ୍ଚରେ ବସି ହୁଏତ କିଛି କଥା ହେଉଥିବା ଲକ୍ଷ୍ୟକରି ସେ ଆମ ଦୁଇଜଣଙ୍କୁ ଠିଆ କରାଇଲେ । ମୋତେ କହିଲେ, "Please repeat what I was talking about". ମୁଁ ପଢ଼ାର ନାମ ଗନ୍ଧ ଧରୁ ନଥିବାରୁ ନୀରବ ରହିଲି । ବୈକୁଣ୍ଠ ମଧ୍ୟ ନୀରବ । ବୈକୁଣ୍ଠର ନୀରବତା ବୋଧହୁଏ ମୋତେ support ଦେବା ପାଇଁ । ମାତ୍ର କବୀର ବାବୁଙ୍କର ତାଚ୍ଛଲ୍ୟ ଭରା କଥା ହୁଏତ ତାଙ୍କୁ ଅସହ୍ୟ ହେଲା କି କ'ଣ । ସେଦିନ କବୀର ବାବୁଙ୍କୁ ବୈକୁଣ୍ଠ ଦେଇଥିବା ଉତ୍ତର କେବଳ ତାଙ୍କୁ ନୁହେଁ, ସମସ୍ତ ସହପାଠୀଙ୍କୁ ମଧ୍ୟ ଚକିତ କରିଥିଲା । ଅତି ନମ୍ରତାର ସହିତ ସେ ଉତ୍ତର ଦେଲା କବୀର ବାବୁଙ୍କର ପ୍ରଶ୍ନର । ବିଷୟବସ୍ତୁଟିକୁ ଆମୂଳଚୂଳ ଉପସ୍ଥାପନ କରିଦେଲା । ତାର କେତେଦିନ ମଧ୍ୟରେ ସେ Chancellor's ଓଡ଼ିଆ ଡ଼ିବେଟ୍‌ରେ ସ୍ୱର୍ଣ୍ଣ ପଦକ ବିଜୟୀ ହୋଇଥିଲା । ଜଣେ Pre-university class ର ଛାତ୍ର ପାଇଁ ଏହା ଅତି ଗର୍ବ ଓ ଗୌରବର କଥା । ଭଦ୍ରକ କଲେଜ ପାଇଁ ଏପ୍ରକାର ବିରଳ ଗୌରବ ହୁଏତ ସର୍ବ ପ୍ରଥମ । ଆମ୍ଭର ପ୍ରିନ୍‌ସିପାଲ୍ ଶ୍ରୀଯୁକ୍ତ ବଳରାମ ସାହୁ ସମେତ ସମସ୍ତେ ଆନନ୍ଦିତ ହୋଇଥିଲେ ।

ବୈକୁଣ୍ଠ ସହିତ ମୁଁ ସବୁ ସମୟରେ ଥାଏ । College task କରିବା ପାଇଁ ସେ କୌଣସି ବହି ପଢ଼ିବା ମୁଁ ପ୍ରାୟ ଦେଖିନାହିଁ । ମୋର ମନେ ହୁଏ, କ୍ଲାସରୁ ଯେତିକି ଆହରଣ କରେ, ତାକୁ ନିଜର ଅନୁଭୂତି-ଜ୍ଞାନ ମିଶାଇ ସମସ୍ତ ପ୍ରଶ୍ନର ଉତ୍ତର ଦେଇଥାଏ । ଯାହା ଶିକ୍ଷକମାନଙ୍କ ଦ୍ୱାରା ଅତିମାତ୍ରାରେ ଆଦୃତ ହୋଇଥାଏ । ଲୋକପାଳୀ ଜୀବନ ନିର୍ବାହ

କରି, ପଢ଼ା ବହି ସହିତ ପ୍ରାୟ ସମ୍ପର୍କ ନଥାଇ, pre-university ରେ ଓ 1st year degree course ରେ ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ରଖିଥାଏ । ସ୍ୱର୍ଗତ ପ୍ରଫେସର ବିବେକାନନ୍ଦ ବାବୁ କହନ୍ତି ବୈକୁଣ୍ଠର ପରୀକ୍ଷା ଖାତା ଦେଖିବାପାଇଁ ଶିକ୍ଷକ ମଣ୍ଡଳୀର ଆବଶ୍ୟକତା ଅଛି । ଏ ସମ୍ପର୍କରେ ଆଉ ଗୋଟିଏ କଥା ମୋର ମନେଅଛି । ଆମେ କେତେଜଣ Science ରୁ Arts କୁ ବଦଳାଇ Economics ରେ ଅନର୍ସ ନେଇ ପଢ଼ିବାକୁ ସ୍ଥିର କରିଥିଲୁ । ମୋର ଭୟ ହେଲା 1st year ରେ Economics ରେ କମ୍ ନମ୍ବର ରହିଲେ ହୁଏତ Honours ନ ମିଳିପାରେ । ଖୋଜ ଖବର ନେବାରେ ଜଣାଗଲା S.V.M. College ରେ ଜଣେ ଅଧ୍ୟାପକଙ୍କ ପାଖରେ ଖାତା ଦେଖା ହେଉଛି । ସେ ମହାଶୟ ଅତି କଠୋର । ମନେ ମନେ ଭାବିଲି ମୋର Honours ପାଇବା ଅସମ୍ଭବ । ସେଠାକୁ ଗଲି ଯେ, ସେ ମୋତେ ତାଙ୍କର ଘରକୁ ପ୍ରବେଶ କରିବାକୁ ଅନୁମତି ଦେଲେ ନାହିଁ । ପରିଶେଷରେ ନିରାଶ ହୋଇ ଫେରିବା ବେଳେ ମୋତେ ଡାକି କହିଲେ, "ତୁମ୍ଭର Honours ମିଳିବାରେ ଅସୁବିଧା ହୋଇ ନପାରେ ।" ସେଠି ପଚ୍ଛରିଲି ବୈକୁଣ୍ଠ କଥା । ତାର ରୋଲ୍‌ନମ୍ବର୍‌ର ଶେଷ ଦୁଇ ଅଙ୍କ ଥାଏ ୨୦, ମୋର ୨୧ ।

ସେ ରଖିଥାଏ ୮୨ ଓ ମୋର ଥାଏ ୫୨ । ମନେ ମନେ ଭାବିଲି ଆମେ ସାଥି ହୋଇ ପଢୁ । Probable Question ର ଉତ୍ତର ସାଥିହୋଇ ଆଲୋଚନା କରୁଁ ମାତ୍ର ଏତେ ତଫାତ୍ ! ମନ ଜାଣିଲା ପରି ସେ ବୈକୁଣ୍ଠର ଖାତାଟିକୁ ମୋତେ ଦେଇ କହିଲେ, "ପଢ଼" । ସ୍ତମ୍ଭୀଭୂତ ହେଲି । ସେ Chief Examiner ଙ୍କୁ ଅନୁରୋଧ କରିଥାଆନ୍ତି ବୈକୁଣ୍ଠର ଖାତା ଉପରେ ଅଧିକ ନମ୍ବର ଦେବାପାଇଁ । ମୁଁ ଭାବିଲି ବୈକୁଣ୍ଠ ଶତକଡ଼ା ୧୦୦ ନମ୍ବର ପାଇବା ଦରକାର ଓ ମୋତେ ଶତକଡ଼ା ୩୦ ନମ୍ବର ଦେଲେ ମଧ୍ୟ ଅଧିକ ହେବ । ଏକଥା ଦୀର୍ଘ ୩୮ ବର୍ଷ ପରେ ମୁଁ ପ୍ରଥମ କରି ଜଣାଉଛି । ପରୀକ୍ଷା ଖାତାରେ ଉତ୍ତର ଲେଖିବା ପ୍ରଣାଳୀ ମୁଁ ପ୍ରଥମ ଥର ପାଇଁ ଜାଣିଲି ।

ନେତୃତ୍ୱ ନେବାରେ ଛାତ୍ର ସମୟରୁ ସେ ଅପ୍ରତିଦ୍ୱନ୍ଦୀ । ୧୯୭୧ ମସିହାରେ ଭଦ୍ରକ କଲେଜ ଛାତ୍ର ୟୁନିଅନ୍ ପ୍ରେସିଡେଣ୍ଟ ପାଇଁ ବୈକୁଣ୍ଠ ପ୍ରତିଦ୍ୱନ୍ଦିତା କରୁଥାଏ । ଶତକଡ଼ା ୯୦% ରୁ ଅଧିକ ଭୋଟ୍ ସେ ପାଇଥାଏ । ମୋର ମନେ ହେଉଥିଲା ପ୍ରତିଦ୍ୱନ୍ଦୀମାନେ ବୋଧହୁଏ ବୈକୁଣ୍ଠ ପାଇଁ ଭୋଟ ଦେଇଥିଲେ ।

Economics ବିଭାଗର ମୁଖ୍ୟ ପ୍ରଫେସର ସନାତନ ମହାନ୍ତି ସେତେବେଳେ ଛାତ୍ର ସଂସଦର ଉପଦେଷ୍ଟା ହିସାବରେ କାର୍ଯ୍ୟ କରୁଥାଏ । ପ୍ରତ୍ୟେକ କ୍ଷେତ୍ରରେ ବୈକୁଣ୍ଠ ସନାତନ ବାବୁଙ୍କ ସହିତ ଆଲୋଚନା କରି ଛାତ୍ର ସମସ୍ୟାର ସମାଧାନ କରୁଥାଏ । ସେହିବର୍ଷ ଭଦ୍ରକ କଲେଜରେ ଛାତ୍ର ଅଶାନ୍ତି ଚ୍ଛଲିଥାଏ । ଅନେକ ନୂଆ ନୂଆ ପ୍ରିନ୍ସପାଲ୍ କଲେଜ ଆସି ବିଦାୟ ନେଇ ଥାଆନ୍ତି । ଶ୍ରୀଯୁକ୍ତ ଗୋକୁଳି ବାବୁ, ପ୍ରଫେସର ଶତ୍ରୁଘ୍ନ ନାଥ ଓ

ପରିଶେଷରେ ଡ଼ା. ତ୍ରିଲୋଚନ ମିଶ୍ର ପ୍ରିନ୍ସପାଲ୍ ହିସାବରେ ଯୋଗଦେଇଥିଲେ ସୁଦ୍ଧା ଅଶାନ୍ତି କମିନଥାଏ । ମାତ୍ର Economics department ର ଶ୍ରୀଯୁକ୍ତ ସନାତନ ମହାନ୍ତି, ଶ୍ରୀଯୁକ୍ତ ବିବେକାନନ୍ଦ ଦାସ, ଶ୍ରୀଯୁକ୍ତ ବିଦ୍ୟାଧର ନାୟକଙ୍କର ବୈକୁଣ୍ଠ ପ୍ରତି ଶ୍ରଦ୍ଧାଭାବ ମାଧ୍ୟମରେ ବହୁ ସମସ୍ୟାର ସମାଧାନ କରିବାପାଇଁ ସକ୍ଷମ ହେଉଥିଲେ ।

ବୈକୁଣ୍ଠ ସର୍ବଦା କହେ, "ଆମ୍ଭମାନଙ୍କର ଅସ୍ତିତ୍ୱକୁ ସମଷ୍ଟିଗତ ଭାବରେ ବିକାଶ ଓ ବିସ୍ତାର କରିବାର ପ୍ରୟାସ ଆରମ୍ଭ ହେବା ଉଚିତ୍ ଓ ତାହା ଏହି ଭଦ୍ରକରୁ ହିଁ ସମ୍ଭବ ।" ତାର ପ୍ରତ୍ୟେକ କଥାରେ, ଆଳାପରେ ମଣିଷକୁ ମୁଖର କରିବାର ପ୍ରୟାସ ସ୍ପଷ୍ଟ ହୋଇଥାଏ । ମେହେନତି ମଣିଷର, ନିଷ୍ପେଷିତ ମଣିଷର ସେ ବନ୍ଧୁ ।

ତୃତୀୟ ବର୍ଷ ଗୋଟିଏ quarters ରେ ଆମେ ରହୁଥାଉ । ସେ ସମୟରେ ବହୁ ବିଶିଷ୍ଟ ମଣିଷଙ୍କର ସାନିଧ୍ୟ ବୈକୁଣ୍ଠ ଯୋଗୁଁ ସମ୍ଭବ ହେଉଥିଲା । ବିଭିନ୍ନ ସମସ୍ୟାର ସମାଧାନ ପାଇଁ ପଟ୍ଟାମୁଣ୍ଡାଇ, କେନ୍ଦ୍ରାପଡ଼ା, ଯାଜପୁର, ବିଞ୍ଝାରପୁର, ଆଦି ଅଞ୍ଚଳର ଛାତ୍ର ଛାତ୍ରୀ ବୈକୁଣ୍ଠକୁ ଦେଖାକରନ୍ତି । ସେଠାରେ ମୋର ସତ୍ୟଭାମାଙ୍କ ସହିତ ସାକ୍ଷାତ ହୋଇଥିଲା । ତାଙ୍କର ଭାଇଙ୍କ ସହ ସେ ବୈକୁଣ୍ଠକୁ ସାକ୍ଷାତ କରିବା ପାଇଁ ଆସି ଥାଆନ୍ତି । ବୈକୁଣ୍ଠ ଓଡ଼ିଶାରେ ସାମ୍ବାଦିକତା କରିବା ସମୟରେ ବିବାହ ହୋଇଥିଲା ସତ୍ୟଭାମା ସହିତ । ସତ୍ୟଭାମା ସହିତ ବୈକୁଣ୍ଠର ବିବାହ ଏକ ବୃହତ୍ ଅଧ୍ୟାୟ । ପ୍ରଥମେ ବିବାଦୀୟ, ପରେ ସୁସମାହିତ । ସୁଖର କଥା ଯେ ବୈକୁଣ୍ଠ ବା ସତ୍ୟଭାମାର ପରିବାର ଏଥିରେ ବାଧା ସୃଷ୍ଟି କରି ନଥିଲେ । ମାତ୍ର ବୈକୁଣ୍ଠର କେତେକ ମୁଷ୍ଟିମେୟ ପରିଜନ ଅନ୍ତରାୟ ହୋଇଥିଲେ । ବୈକୁଣ୍ଠର ବହୁ Senior friends, ସାଥି, ଶିକ୍ଷକବୃନ୍ଦ ଏହାକୁ ନୈତିକ ସମର୍ଥନ ଦେଇଥିଲେ । ଆମ୍ଭେ ବନ୍ଧୁଗଣ ଏଥିରେ ସହଯୋଗ କରିଥିଲୁ । ବିବାହପରେ ସେମାନଙ୍କ ବନ୍ଧୁ ପରିଜନଙ୍କ ସହିତ ଏକତ୍ର ଗାଁକୁ ଯାଇଥିଲୁ । ଗାଁରେ ବିରୋଧ କରୁଥିବା ବ୍ୟକ୍ତିମାନେ ବୈକୁଣ୍ଠର ଯାଦୁକାରୀ ବ୍ୟବହାର ଓ କଥାରେ ଆୟତ୍ତ ହୋଇଥିଲେ କେଇଦିନ ମଧ୍ୟରେ ।

ବୈକୁଣ୍ଠର ଅତି ଘନିଷ୍ଠ ବନ୍ଧୁମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ସୁରେଶ ନାୟକ, ଅନ୍ତର୍ଯ୍ୟାମୀ ସ୍ୱାଇଁ, ବିଭୁତି ଆଚାର୍ଯ୍ୟ, ସନ୍ତୋଷ ଦାସ, ପ୍ରଦୀପ ମହାନ୍ତି, ନାରାୟଣ ଦାସ, ବିଶ୍ୱପ୍ରକାଶ ମହାପାତ୍ର, ମାୟାଧର ମହାପାତ୍ର, ହରିହର ସାଆନ୍ତ, ଶ୍ରୀମତୀ ରେଖାଦାସ, ଏବଂ ବିଶିଷ୍ଟ ବ୍ୟକ୍ତି ମଧ୍ୟରେ ଏଡ଼ଭୋକେଟ୍ ନିରାକାର ଜେନା, ଉପେନ୍ଦ୍ର ସ୍ୱାଇଁ, ଭଦ୍ରକ କଲେଜର ଶିକ୍ଷକ ସମୁଦାୟ ମଧ୍ୟରେ ଶ୍ରୀମତୀ ବେଲାରାଣୀ ଚନ୍ଦ, ଅଧ୍ୟକ୍ଷ ପ୍ରଫେସର୍ ବଳରାମ ସାହୁ, ପ୍ରଫେସର ସନାତନ ମହାନ୍ତି, ଡ. ବିବେକାନନ୍ଦ ଦାସ, ଡ. ବିଦ୍ୟାଧର ନାୟକ, ଡ. ମନମୋହନ ଦାସ, ପ୍ରଫେସର୍ ଶତ୍ରୁଘ୍ନ ନାଥ, ପ୍ରଫେସର୍ ତ୍ରିଲୋଚନ ମିଶ୍ର, ଙ. ଅକ୍ଷୟ ଦାସ, ଶ୍ରୀଯୁକ୍ତ ସୁଧାଂଶୁ ଶେଖର ରାୟ ପ୍ରମୁଖ । ଅଧ୍ୟକ୍ଷ ଶ୍ରୀଯୁକ୍ତ ବଳରାମ ସାହୁ ବୈକୁଣ୍ଠର କାର୍ଯ୍ୟଧାରାରେ ମୁଗ୍ଧ ହୋଇଥିଲେ ।

ବୈକୁଣ୍ଠର ପ୍ରତ୍ୟୁତ୍ପନ୍ନମତି ଓ ମଣିଷକୁ ସମସ୍ୟାମୁକ୍ତ କରିବାର ପ୍ରଣାଳୀ ଆମକୁ ବିସ୍ମିତ କରିଥାଏ । ବନ୍ଧୁତା ରକ୍ଷା କରିବାକୁ ସେ ସର୍ବୋଦୌ ପ୍ରଚେଷ୍ଟିତ, ଯେକୌଣସି ଅବସ୍ଥାର ବିନିମୟରେ । କଥା ଦେଇ କଥା ନରଖିବାର ନଜିର ନାହିଁ । ଦୀନ ଦରିଦ୍ର ରିକ୍ସାବାଲା ଠାରୁ ଆରମ୍ଭ କରି ବିଦ୍ୱାନ ପ୍ରଫେସର ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ତାର ନିବିଡ଼ତା । ଏହା ସାଧାରଣ ମଣିଷର ଚରିତ୍ରରେ ବିରଳ । ରିକ୍ସାବାଲାଏ ତାକୁ ମାଷ୍ଟ୍ରେ ବୋଲି ସମ୍ବୋଧନ କରନ୍ତି ।

ଶିକ୍ଷାପରେ ଚାକିରୀ କରିବା ପାଇଁ ବୈକୁଣ୍ଠକୁ ଆମେ କେତେଜଣ ପ୍ରାୟ ବାଧ୍ୟ କରିଥିଲୁ । ଜୀବନର ଶୁଦ୍ଧତା ପାଇଁ ଗୋଲାମୀ କୈନ୍ଦ୍ରିକ ଜୀବନ ବିତାଇବା ସମ୍ଭବ ନୁହେଁ ବୋଲି ମୋତେ ପ୍ରାୟ କହିଥାଏ । ନଜିର ଦିଏ କବି କାଳୀଚରଣ ପଟ୍ଟନାୟକଙ୍କର, ଯିଏ ଚାକିରୀ ଛାଡ଼ିବା ବେଳକୁ ତାଙ୍କର HMV ରେକର୍ଡ଼ ପ୍ରସ୍ତୁତ ହୋଇଥାଏ – "ଚାକିରୀ ନାହିଁ କରି" ।

ଅର୍ଥାଭାବକୁ କଠୋର ଅର୍ଥନୀତିର ସୂତ୍ରରେ ସେ ପରାସ୍ତ କରିପାରିଛି ମାତ୍ର କାହାକୁ ଦିନେ ହାତ ପାତିନାହିଁ । ଏହା ଅତି ଆଶ୍ଚର୍ଯ୍ୟ ।

ବିବାହିତ ଜୀବନ ଅଳ୍ପ ସୁଖ ଓ ବହୁ ଦୁଃଖର ସମାହାର । ଦୁଇଟି ଅମୂଲ୍ୟରତ୍ନ – ପୁଅ ଚିନ୍ମୟ ଓ ଝିଅ ଚେତନା – ସେ ସତ୍ୟଭାମାକୁ ଦେଇଛି । ସତ୍ୟଭାମା ଚାକିରୀ କ୍ଷେତ୍ରରେ ସୁଦୂର ସୁନ୍ଦରଗଡ଼ର ବନ୍ଧ ବାହାଲଠାରେ ରହିବାକୁ ବାଧ୍ୟ ହୋଇଛି ପରିସ୍ଥିତିର ତାଡ଼ନାରେ । ସ୍ତ୍ରୀ ହିସାବରେ ସେ ବୈକୁଣ୍ଠଠାରୁ ସ୍ନେହ ଶ୍ରଦ୍ଧା ପାଇଲେ ମଧ୍ୟ ଜୀବନର ବହୁଭାଗ ବିଭିନ୍ନ କାରଣ ପାଇଁ Sacrifice କରିଛି । ବୈକୁଣ୍ଠର ସହଧର୍ମିଣୀ ହେବା କାରଣରୁ ମନ୍ଦ ଭାଗ୍ୟ ଭୋଗ କରିଛି, ମାତ୍ର ଏହା ପ୍ରାୟ ପ୍ରଜ୍ଞାବାନ୍ ଉର୍ଦ୍ଧ୍ୱମୁଖ ମଣିଷର ଚଲାପଥର ସାଥିମାନଙ୍କର ଅବସ୍ଥା ।

ବିଧିର ବିଧାନ ଭିନ୍ନ । ଭଲମଣିଷ ଶୀଘ୍ରଯାଏ ପ୍ରାୟତଃ । ସେଦିନ ମୁଁ ତା'ସହ ଥିଲି ସକାଳ ୧୧.୩୦ ପର୍ଯ୍ୟନ୍ତ । ସସ୍ତ୍ରୀକ ସନ୍ଧ୍ୟାରେ ଯାଇ ପହଞ୍ଚିଲାବେଳକୁ ସେ ଆଉ ନାହିଁ । ମେ ୨୮, ୧୯୯୮ ମସିହା । ସମସ୍ତଙ୍କୁ ହତବାକ୍ କରି ଆଲୋକପଥର ଯାତ୍ରୀ ହେବା ବୈକୁଣ୍ଠକୁ ୧୭ ରୁ ୪୭ ବର୍ଷ ପର୍ଯ୍ୟନ୍ତ ମୁଁ ଏକାନ୍ତରେ ଜାଣିଛି । ଏପ୍ରକାର ସାଥୀ କାହିଁ ? ସେ ପରଲୋକରେ ଥିଲେ ମଧ୍ୟ ତାର କଥା ମତେ ବିସ୍ମିତ କରେ । ସତେ ଯେପରି ସାମନାରେ ସେହି ଶୁଭ୍ର ବସନ ପରିହିତ ବୈକୁଣ୍ଠ । ସେ ସବୁ ସମୟରେ କବି ଚଣ୍ଡିଦାସଙ୍କର କବିତା ଆବୃତି କରୁଥାଏ "ସୁନାର ମାନୁଷ ଭାଇ, ସବାର ଉପରେ ମାନୁଷ ସତ୍ୟ/ତାର ଉପରେ ନାଇଁ ।" ମଣିଷର ଉପାସନା ତାର ଜୀବନର ଦର୍ଶନ ।

ପରିଶେଷରେ ମୁଁ ବାଧ୍ୟହୋଇ ଜଣାଉଛି ଯେ କାଗଜ କଲମରେ ବୈକୁଣ୍ଠ ବିଶ୍ୱାଳକୁ ପ୍ରକାଶ କରିବା ଅତ୍ୟନ୍ତ କଷ୍ଟ । ପ୍ରତ୍ୟେକ ମୁହୂର୍ତ୍ତପାଇଁ ସେ ମଣିଷ ସ୍ୱତନ୍ତ୍ର । ତାର ବିଚାର

ଆଲୋଚନା ନିଆରା ଓ ପ୍ରସାରିତ । ସେ ଯେଉଁ ବିଚାରଧାରାର ମଣିଷ ତାହା କେବେ ହୁଏତ ପଲ୍ଲବିତ ହେବ, ନୂତନ ରୂପରେଖ ନେବ ତାର ଅଳିଅଳି କନ୍ୟା ଚେତନା ଓ ସୁପୁତ୍ର ଚିନ୍ମୟ ମାଧ୍ୟମରେ, ବନ୍ଧୁମାନେ ହୁଏତ ସହଯୋଗର ହାତ ବଢ଼ାଇବେ ।

ଜିଲ୍ଲା ଶ୍ରମଅଧିକାରୀ, ଭଦ୍ରକ



# ସ୍ମୃତିରୁ ଟିକିଏ

***ଶଶୀରେଖା ନାଥଶର୍ମା***

୧୯୬୬ ମସିହା । ସେ ବର୍ଷ ମୋର ନବମ ଶ୍ରେଣୀ । ସବୁବର୍ଷ ଭଳି ସ୍କୁଲ୍ ମାଗାଜିନ୍ ପ୍ରକାଶ ପାଇଲା । ସେଥିରେ ମୋର ଛୋଟ କବିତାଟିଏ ପ୍ରକାଶ ପାଇଥାଏ । କବିତାଟି ଜୀବନ ମୃତ୍ୟୁର ଲୁଚକାଳି ଖେଳକୁ ଆଧାରିତ କରି । ମୋର ପରମ ପୂଜ୍ୟ ଗୁରୁଜୀ ଶ୍ରୀ ଲୋଚନା ନନ୍ଦ ବରାଳ କ୍ଲାସ୍‌କୁ ପଶି ଆସି କହିଲେ, "ଆମ ବୈକୁଣ୍ଠ ପୁରା ମାଗାଜିନ୍‌ଟି ପଢ଼ିସାରି ସବୁ ଗଦ୍ୟ ଓ ପଦ୍ୟଉପରେ ତାର ମନ୍ତବ୍ୟ ଦେଇଛି । ଶଶୀରେଖା ! ତୋ ପାଇଁ କ'ଣ ଅଛି ଜାଣୁ ? ବିଂଶ ଶତାବ୍ଦୀର ଯୁବତୀଙ୍କ ପ୍ରାଣରେ ଏ ନୈରାଶ୍ୟବାଦିତା କ'ଣ ଶୋଭାପାଏ ?" ଯେମିତି ମନରେ ଏକ ଚମକ୍ ଖେଳିଗଲା । ସେ ଦିନର ସେଇ କେତୋଟି ପଦ ଯେମିତି ମନରେ ଅଲିଭା ସ୍ମୃତି ହୋଇ ରହିଛି । ହୁଏତ ବଞ୍ଚିଥିବା ଯାଏ ଏହା ମୋ ମନ ପେଡ଼ିରେ ସାଇତା ହୋଇ ରହିବ । ସେ ଦିନର ସେଇ କେତୋଟି ପଦରେ ଯେମିତି ମୁଁ ଜୀବନର ଏକ ନୂଆ ମାର୍ଗ ଅବିଷ୍କାର କରିଥିଲି । ନୂତନ ଚେତନା, ନୂତନ ପ୍ରେରଣା, ନୂତନ ସ୍ପନ୍ଦନ, ନୂତନ ଆଶା, ଭରସା ସବୁକିଛି ପାଇଗଲି । ଏବେ ବି ସେ ଧାଡ଼ିକ ମୋର ପଥପ୍ରଦର୍ଶକ । ଜୀବନର ଚଲାବାଟରେ କେଉଁଠି ଥକି ପଡ଼ିଲେ କି ଥମି ଗଲେ ପୁଣି ବୈକୁଣ୍ଠ ଭାଇ କଥା ମନେ ପଡ଼ିଯାଏ । ସେଇ କଳା ମୁଗୁନିର ଖୋଦେଇ ମୂର୍ତ୍ତି, ମୁରୁ ମୁରୁ ହସ, ନୀରବ ଭାଷା – ମୋତେ କିଛି ନୂଆ ବାଟ ମିଳିଯାଏ । ସେ ମୋର ଏବେ ବି ନୀରବ ପ୍ରେରଣା, ଏବେ ବି ମୋର ଆଦର୍ଶ । ଯିଏ ପଦେ କଥା କହେନି, ଯିଏ ଝିଅମାନଙ୍କୁ ଦେଖିଲେ ଅଧ ମାଇଲିଏ ଦୂରରୁ ବାଟ ଭାଙ୍ଗି ଚାଲିଯାଏ, ଯିଏ ମୁଣ୍ଡଟେକି ଥରେ ହେଲେ ମୁହଁକୁ ଚାହେଁନାହିଁ, ସିଏ କିନ୍ତୁ ସମସ୍ତଙ୍କ ଅତି ନିଜର, ଅତି ଆପଣାର ବୈକୁଣ୍ଠ ଭାଇ । ପିତାମାତାଙ୍କର ସିନା ଏକମାତ୍ର ସନ୍ତାନ, କିନ୍ତୁ ଦୁନିଆଁକୁ ସେ ଭ୍ରାତୃ ସ୍ନେହରେ ବାନ୍ଧି ଯାଇଛନ୍ତି । ଆଜି ମଧ୍ୟ ସେ ଜୟହିନ୍ଦ୍ ହାଇସ୍କୁଲ୍ ଏବଂ ପ୍ରତ୍ୟେକ ଜୟହିନ୍ଦ୍‌ଏଟ୍ ଗର୍ବକରେ ସେଭଳି ଅମୂଲ୍ୟ ରତ୍ନକୁ ପାଇ । ବେଳେବେଳେ ମନେପଡ଼େ ସେଇ ହାଫ୍ ପ୍ୟାଣ୍ଟ ହାଫ୍ ସାର୍ଟ ସ୍କୁଲ୍ ୟୁନିଫର୍ମ ପିନ୍ଧା କିଶୋର ରୂପ । କାନପାଖରେ ଗୁଞ୍ଜରିତ ହୋଇଉଠେ ସ୍କୁଲ୍ ପ୍ରାଙ୍ଗଣରେ ବାରଶହ

ପିଲା ଏବଂ ଶିକ୍ଷକ ଗୋଷ୍ଠୀ ସମ୍ମୁଖରେ ଠିଆ ହୋଇ ବୈକୁଣ୍ଠ ଭାଇର ଓଜସ୍ୱିନୀ ବକ୍ତୃତା । ସେ ଥିଲେ ଅନନ୍ୟ, ଅସାଧାରଣ ଏକ ବଳିଷ୍ଠ ବ୍ୟକ୍ତିତ୍ୱ ।

ସେଦିନ ମୋର ପରମ ସୌଭାଗ୍ୟ ଥିଲା । ଏକଦା କୌଣସି କାମରେ ଆସି ଆମର କାଳୁପଡ଼ାଘାଟ ବାସଭବନରେ ଅଟକି ଯାଇଥିଲେ । ଦୁଇଦିନ ପାଇଁ ମୋର ବୈକୁଣ୍ଠଭାଇ ଆସିଛନ୍ତି ମୋର ଶାଶୁଘରକୁ । ନିଜକୁ କୃତ୍ୟ କୃତ୍ୟ ଭାବୁଥିଲି । ବୋଧହୁଏ ତାପରେ ଥରେ ଅଧେ ଦେଖା ହୋଇଥିବ । ତାଙ୍କର ଲାଜକୁଳା ସ୍ୱଭାବରୁ ସେ କିଛି ସିନା କହନ୍ତି ନାହିଁ, କିନ୍ତୁ ତାଙ୍କର ମୌନ ହସ ଏବଂ କଥାକୁହା ଆଖିରେ ଯେମିତି ଆପଣାର ଭାବ ଫୁଟି ଉଠେ । ସୁଖରେ ନୁହେଁ, ଦୁଃଖରେ, ଦୁଃଖସମୟରେ ପାଖରେ ଠିଆ ହୋଇ କହୁଛନ୍ତି "କ'ଣ ହୋଇଛି ତୋ'ର ? ଭାଙ୍ଗି ଯାଇଛି କି ଗଢ଼ାଇ ଦେବି, ହଜି ଯାଇଛି କି ଖୋଜି ଆଣିବି ? ମୁଁ ପରା ତୋର ବୈକୁଣ୍ଠ ଭାଇ !"

ଶିକ୍ଷୟିତ୍ରୀ, କାଳୁପଡ଼ାଘାଟ



# ବୈକୁଣ୍ଠ ଭାଇ

*ସୁରେନ୍ଦ୍ର ନାଥ ପରିଡ଼ା*

୧୯୬୭ ମସିହା । ହଠାତ୍ ବୈକୁଣ୍ଠଭାଇ ଆମେ ରହୁଥିବା ରେଭେନ୍ସା କଲେଜର ପୂର୍ବ ଛାତ୍ରାବାସରେ ପହଞ୍ଚିଲେ । କହିଲେ, "ମୁଁ ବାଣୀବିହାର ଯାଇଥିଲି ଏକ ବକ୍ତୃତା ପ୍ରତିଯୋଗିତାରେ ଯୋଗଦେବାକୁ ଏବଂ ଏଇ Gold Medal ଟି ପାଇଲି ।" ଆମର ସେ ସମୟରେ Chancellor debate ସମ୍ପର୍କରେ ଧାରଣା ନଥିଲା । ଏ ଖବରରେ ଆମ୍ଭେମାନେ (ମୁଁ, ନିଗମ ଭାଇ, ବିଜୟ, ପ୍ରଫୁଲ୍ଲ) ବହୁତ ଖୁସୀ ଓ ଗର୍ବିତ ଅନୁଭବ କଲୁ ଓ ଅନ୍ୟ ପିଲାମାନଙ୍କୁ ତା'ର ଉପଲବ୍ଧି ବିଷୟରେ ଜଣାଇଲୁ ।

ଜୟହିନ୍ଦ୍ ହାଇସ୍କୁଲରେ ପଢୁଥିବା ବେଳେ ନବମ ଶ୍ରେଣୀ ଶେଷଆଡ଼କୁ ବୈକୁଣ୍ଠ ଓ ମୁଁ ସାଙ୍ଗ ହୋଇଯାଇଥିଲୁ । କିନ୍ତୁ ମାଟ୍ରିକ୍ ପାସ୍ ବେଳକୁ ସେ ବୈକୁଣ୍ଠରୁ ମୋ ପାଇଁ 'ବୈକୁଣ୍ଠଭାଇ' ହୋଇଗଲେ । ହାଇସ୍କୁଲରେ ସେ ବହୁତ ଭଲ ପଢୁଥିଲେ । ଭାଷା ସାହିତ୍ୟରେ ସେ ବହୁ ଅଧିକ ନମ୍ବର ରଖୁଥିଲେ । ବକ୍ତୃତା, ପ୍ରବନ୍ଧ, ପ୍ରତିଯୋଗିତା ଇତ୍ୟାଦିରେ ପ୍ରଥମ ହେବାଟା ତାଙ୍କର ଅଭ୍ୟାସରେ ପରିଣତ ହୋଇଯାଇଥିଲା । ହାଇସ୍କୁଲରୁ ସବୁଥିରେ ନେତୃତ୍ୱ ନେବା, ସବୁ ଶ୍ରେଣୀର ଛାତ୍ରଙ୍କ ସହ ଭଲ ସମ୍ପର୍କ ରଖିବା, ଆବଶ୍ୟକବେଳେ ସାହାଯ୍ୟ କରିବା ଇତ୍ୟାଦି କାରଣ ଯୋଗୁଁ ସମସ୍ତେ ତାଙ୍କୁ ଭଲ ପାଉଥିଲେ । ସେ ଭଦ୍ରକ କଲେଜରେ ପଢୁଥିବାବେଳେ ଯଦିଓ ମୁଁ ରେଭେନ୍ସାରେ ପଢୁଥିଲି,

ଆମର ସମ୍ପର୍କ ଅତୁଟ ଥିଲା । ଭଦ୍ରକ କଲେଜରେ ଅଦ୍ୱିତୀୟ ନେତା ହେବା ସଙ୍ଗେ ସଙ୍ଗେ ସେ ନିଜକୁ ବାମପନ୍ଥୀ ଆନ୍ଦୋଳନ ସହ ସାମିଲ କରିସାରିଥିଲେ । ସେ ସେଠାରେ ଏତେ ଜଣାଶୁଣା ହୋଇଯାଇଥିଲେ ଯେ ଆମେ ଥରେ ରାତି ୧୧ଟା ୩୦ରେ ଭଦ୍ରକ ଷ୍ଟେସନ୍‌ରୁ ପହଞ୍ଚି ତାଙ୍କ ଠିକଣା ସମ୍ପର୍କରେ ପଚାରିବାରୁ ଆମକୁ ଏକ ରିକ୍‌ସାବାଲା ତାଙ୍କ ରହୁଥିବା ସ୍ଥାନରେ ନେଇ ପହଞ୍ଚାଇ ଦେଇଥିଲା ।

ତା'ପରେ ଭଦ୍ରକରୁ ଦିଲ୍ଲୀ । ତାଙ୍କ ଦିଲ୍ଲୀ ରହଣୀ ବେଳରେ ଯଦିଓ ମୋର ବିଶେଷ ଧାରଣା ନଥିଲା, ତଥାପି ସମୟ ସମୟରେ ଚିଠିପତ୍ର ଆଦାନ ପ୍ରଦାନ ଥିଲା । "ପ୍ରତିପକ୍ଷ" ନାମକ ଏକ ହିନ୍ଦୀ ସାପ୍ତାହିକରେ ନିୟମିତ ସ୍ତମ୍ଭକାର ଥିଲେ । ତା'ଛଡ଼ା ଭାରତରେ ବାମପନ୍ଥୀ ଆନ୍ଦୋଳନର ଭିତ୍ତିଭୂମି ଉପରେ ଏକ ବହି (Spring Thunder And After) ପାଇଁ material ସଂଗ୍ରହ କରୁଥିଲେ । ସେହି ବହିର ସଂକ୍ଷିପ୍ତ ବିବରଣୀ (synopsis) ଲଣ୍ଡନର ଏକ ପ୍ରତିଷ୍ଠିତ ପତ୍ରିକାରେ ପ୍ରକାଶ ପାଇଥିଲା ଯାହା ମୋତେ ସେ ଭୁବନେଶ୍ୱରରେ ଦେଖାଇଥିଲେ ।

ଦିଲ୍ଲୀରୁ ଭୁବନେଶ୍ୱର ଫେରବା ପରେ ନିଜସ୍ୱ ଦୃଷ୍ଟିଭଙ୍ଗୀରେ ଏକ ଓଡ଼ିଆ ସାପ୍ତାହିକ ପତ୍ରିକା ପ୍ରକାଶ କରିବାକୁ ସ୍ଥିର ହେଲା । ସବୁ ଠିକ୍ ଠାକ୍ ଚାଲିଥିଲା । ଏଥିପାଇଁ ମୁଖ୍ୟ ଅର୍ଥ ସହାୟତା କରୁଥିବା ଶ୍ରୀ କୃପାସିନ୍ଧୁ ଜେନାଙ୍କ ହଠାତ୍ ଅକାଳ ବିୟୋଗ ଯୋଗୁଁ ସବୁ ଯୋଜନା ଗୋଳମାଳ ହୋଇଗଲା । କିନ୍ତୁ ସରକାରୀ ଋଣ ଅଣାହେଲା, ବହୁ ବନ୍ଧୁ ସହାୟତା କଲେ, ଓଡ଼ିଆ ସାପ୍ତାହିକ "ଲୋକାଗ୍ରହ" ପ୍ରକାଶ ପାଇଲା । ଯେଉଁ କେତେ ଖଣ୍ଡ ପ୍ରକାଶ ପାଇଛି ବୈକୁଣ୍ଠ ଭାଇଙ୍କ ମୌଳିକ ସମ୍ପାଦକୀୟ ସବୁଠି ପ୍ରଶଂସା ପାଇଛି । ମାତ୍ର ଅର୍ଥାଭାବ ଯୋଗୁଁ "ଲୋକାଗ୍ରହ" ଚଳାଇବା ସମ୍ଭବ ହେଲାନାହିଁ । ସେହି ସମୟରେ ସାହାଯ୍ୟ ସହଯୋଗ କରୁଥିବା ବନ୍ଧୁମାନେ ଧିରେ ଧିରେ ଅପସରି ଗଲେ । ତା'ପରେ ଆରମ୍ଭ ହେଲା ଏକାକୀ ଯାତ୍ରା । ତା' ମଧ୍ୟରେ ସେ ଜୀବନ ରହସ୍ୟ, ଆଧ୍ୟାତ୍ମିକତା ପ୍ରଭୃତି ଜାଣିବାର ପ୍ରୟାସ ଜାରି ରଖିଥିଲେ । ଅତ୍ୟନ୍ତ ଅର୍ଥ ସଂକଟରେ ଥିଲାବେଳେ କେତେକ ପ୍ରତିଷ୍ଠିତ ଖବରକାଗଜ ସଂସ୍ଥା ତାଙ୍କୁ ଚାକିରୀପାଇଁ ପ୍ରବର୍ତ୍ତାଇଥିଲେ ମଧ୍ୟ ନିଜସ୍ୱ ମୌଳିକତା ନଷ୍ଟ ହେବାର ଆଶଙ୍କା ଥିବାରୁ ସେ ଚାକିରୀ କରିବାରୁ ନିଜକୁ ନିବୃତ୍ତ କରିଥିଲେ । ସେ ତା'ପରେ ଭଗବତ ବିଶ୍ୱାସୀ ହୋଇ ପଡ଼ିଥିଲେ । ଅସଜଡ଼ା ପରିବାର, ଉତ୍କଟ ଅର୍ଥାଭାବ ତଥା କେତେକ ମାନବୀୟ ଦୁର୍ବଳତା ଶେଷ ଆଡ଼କୁ ତାଙ୍କୁ ଏକ ନୈରାଶ୍ୟ ମଧ୍ୟକୁ ନେଇଯାଇଥିଲା । ତଥାପି ସେ କେବେ ଭାଙ୍ଗି ପଡ଼ିନଥିଲେ । ସାଙ୍ଗମାନଙ୍କ ସହ ଆନୁଷ୍ଠାନିକ, ସାମାଜିକ ଓ ପାରସ୍ପରିକ ସମ୍ପର୍କ ବଜାୟ ରଖିଥିଲେ ।୧୯୯୮ ମସିହାରେ ତାଙ୍କର ହଠାତ୍ ମୃତ୍ୟୁ ମୋତେ ବ୍ୟକ୍ତିଗତ ଭାବେ ବହୁତ ଦୁଃଖ ଦେଇଛି ।

ମାନସିକ ରୋଗ ବିଶେଷଜ୍ଞ
ସରକାରୀ ଚିକିତ୍ସାଳୟ
ୟୁନିଟ୍ - ୬, ଭୁବନେଶ୍ୱର



# ଏକ ଅବସନ୍ନ ଜୀବନ

**ବିମଳ ନାୟକ**

୧୯୬୭ ମସିହା ବେଳକୁ ଭଦ୍ରକ କଲେଜ ଓଡ଼ିଶାର ଦ୍ୱିତୀୟ ବୃହତ୍ତମ ମହାବିଦ୍ୟାଳୟ । କେନ୍ଦ୍ରାପଡ଼ାଠାରୁ ଆରମ୍ଭ କରି ବାଲେଶ୍ୱର ପର୍ଯ୍ୟନ୍ତ ପିଲାମାନଙ୍କର ସେ କଲେଜରେ ଭିଡ଼ । ମୁଁ ଯାଜପୁର ଜିଲ୍ଲାର ସୁଦୂର ଗାଁରୁ ଆସି କଲେଜର ବିଜ୍ଞାନ ବିଭାଗରେ ନାଁ ଲେଖାଇ ଥାଏ ଓ ଧୀରେ ଧୀରେ ମଫସଲ ସ୍କୁଲ୍‌ର ଅନୁଭୂତି ଦୂରେଇ ଯାଉଥାଏ ସେ ଛୋଟ ସହର ଓ ବିଭିନ୍ନ ଆଡୁ ଆସିଥିବା ସାଙ୍ଗମାନଙ୍କୁ ଦେଖି ଓ ଅନୁଭବ କରି । ସେ ବର୍ଷ ଆମ ଶ୍ରେଣୀର ସର୍ବୋତ୍‌କୃଷ୍ଟ ଛାତ୍ର ଥିଲେ ବୈକୁଣ୍ଠ ବାବୁ । ତାଙ୍କର ଚାଲିଚଳନ, ଶ୍ରଦ୍ଧା ଓ ସୌଜନ୍ୟ ଆମକୁ ଏପରି ପ୍ରଭାବିତ କରିଥିଲା ଯେ ବନ୍ଧୁ ହୋଇ ମଧ୍ୟ ବୈକୁଣ୍ଠ ଡାକିବାକୁ ମୋତେ କିପରି ଅଡୁଆ ଲାଗିଥିଲା । ପ୍ରଥମ ବର୍ଷ ସେ କୁଳପତି ବକ୍ତୃତା (ଓଡ଼ିଆ) ପ୍ରତିଯୋଗିତାରେ ସ୍ୱର୍ଣ୍ଣ ପଦକ ପାଇଲେ ଓ ଆମେ ତାଙ୍କର ନିକଟତମ ବନ୍ଧୁ ହିସାବରେ ତାଙ୍କଠାରୁ ଅଧିକ ଖୁସି ହୋଇଥିଲୁ । ଧୀରେ ଧୀରେ କଲେଜରେ ବିଜ୍ଞାନ ଓ କଳା ବିଭାଗର ସମସ୍ତ ଶିକ୍ଷାନବିଶ ତାଙ୍କୁ ବେଶ୍ ସମ୍ମାନ ଦେବା ଆରମ୍ଭ କଲେ । ପ୍ରାକ୍ ବିଜ୍ଞାନର ଶେଷ ବେଳକୁ ରାଜନୀତି ସହ ସାହିତ୍ୟ ସଂସ୍କୃତି କ୍ଷେତ୍ରପ୍ରତି ସେ ବିଶେଷ ଧ୍ୟାନ ଦେଉଥିଲେ । ତାଙ୍କର ବ୍ୟକ୍ତିଗତ ସମ୍ପର୍କଥିଲା ସବୁଠାରୁ ମୂଲ୍ୟବାନ୍ । ବନ୍ଧୁମାନଙ୍କର ସୁଖରେ ଦୁଃଖରେ ଭାଗନେଇ ସନ୍ତୋଷ ଲାଭ କରୁଥିଲେ ସେ । ଦୁଃଖୀ ଓ ଦରଦୀ ମଣିଷ ପାଇଁ ତାଙ୍କ ଆତ୍ମା କାନ୍ଦୁଥିଲା । ୧୯୭୦ ମସିହା ବେଳକୁ ସେ ମାଓସେତୁଙ୍ଗଙ୍କର ସଂଗ୍ରାମ ଧାରାରେ ସାମିଲ୍ ହେଲେ । ତାଙ୍କ ସହ ମୋ ଭଳି କେତେକ ମଧ୍ୟ ସେହି ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ ଆନ୍ଦୋଳନରେ ଯୋଗ ଦେଇଥିଲୁ । ତେଣୁ ସବୁସତ୍ତ୍ୱେ ସେହି ଚିନ୍ତାଧାରାର ଛାପ ଆଜିପର୍ଯ୍ୟନ୍ତ ଆମର ମାନସପଟରେ ଜାଗ୍ରତ । ବଞ୍ଚିବାର ଆନନ୍ଦ ଅନ୍ୟକୁ ଦୁଃଖ କଷ୍ଟରୁ ବଞ୍ଚାଇବାରୁ ହିଁ ମିଳେ । ଦିଲ୍ଲୀ ସ୍କୁଲ୍ ଅଫ୍ ଇକନମିକ୍ସରୁ ପାଶ୍ କରି ସେ ଜଣେ ଉଚ୍ଚପଦସ୍ଥ ଅଫିସର ହୋଇ ପାରି ଥାଆନ୍ତେ କିନ୍ତୁ ଓଡ଼ିଆ ଜାତି ପ୍ରୀତି, ଦାରିଦ୍ର୍ୟ କଷାଘାତରେ ମୃତ ପ୍ରାୟ ଅବସ୍ଥାରେ ଥିବା ଲକ୍ଷ ଲକ୍ଷ ଓଡ଼ିଆ, ବିଶେଷରେ ଆଦିବାସୀ ଓ ହରିଜନଙ୍କର ପଶୁବତ୍ ଜୀବନର କିପରି ସମାପ୍ତି ଘଟିବ, ଏସବୁ ଚିନ୍ତା ତା'ଙ୍କୁ ବ୍ୟଥିତ କରୁଥିଲା । ସେ ଶେଷରେ ସଂକଳ୍ପବଦ୍ଧ ହେଲେ ଯେ ଲେଖା ମାଧ୍ୟମରେ ସମାଜରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରିବେ ଓ ନିଜର କଳ୍ପନା ଦ୍ୱାରା ନିଜର ଅସ୍ତିତ୍ୱକୁ ଗଠନ କରିବେ । ସେ ସେହି କଳ୍ପନାକୁ ଅନୁସରଣ କରି ଚାଲିଲେ, ହେଲେ ପାରିପାର୍ଶ୍ୱିକ ପରିସ୍ଥିତି ତାଙ୍କୁ ଗତିଶୀଳ ହେବାକୁ ଦେଲାନି । ଏହିପରିଭାବେ ତାଙ୍କର ଜୀବନ ତାତ୍‌କ୍ଷଣିକ ବସ୍ତୁ ଓ ଘଟଣାବଳୀରେ ବନ୍ଧାହୋଇ ଗଲା ।

ତାଙ୍କର କଳ୍ପନା, ବୁଦ୍ଧି ଓ ସୃଜନଶୀଳ ପ୍ରାଣଶକ୍ତିର ମିଶ୍ରଣ ହୋଇ ପାରିଲାନି । ତେଣୁ ସେଭଳି ଏକ ଅଦମନୀୟ ଚରିତ୍ରର ଜୀବନ୍ତଶକ୍ତି ପରିପ୍ରକାଶ ହୋଇ ପାରିଲାନି । ମୁଁ ଖୁବ୍ ନିକଟରୁ ତାଙ୍କୁ ଦେଖିଛି କାରଣ ମୁଁ ତାଙ୍କୁ ବେଶୀ ଶୁଣେ ଓ ଦେଖେ । ପ୍ରାୟତଃ ମୋର ବ୍ୟକ୍ତିତ୍ୱ ଉପରେ ତାଙ୍କର ବହୁତ ପ୍ରଭାବ ପଡ଼ିଥିଲା ଯାହା ଏପର୍ଯ୍ୟନ୍ତ ମୋର କାର୍ଯ୍ୟ କଳାପରେ ପରିଲକ୍ଷିତ ହୁଏ । ମୋର ଗୋଟିଏ ଅନୁଭୂତି ହେଲା ବି.ଏ. ଶେଷ ବର୍ଷରେ । ମୁଁ ଅର୍ଥନୀତି ବିଷୟରେ ଦୁର୍ବଳ ଥାଏ । ତେଣୁ ବୈକୁଣ୍ଠ ବାବୁଙ୍କୁ କହିଲି, "କପି କରିବି" । ସେ ସଙ୍ଗେ ସଙ୍ଗେ କହିଲେ, "ତୁ କ'ଣ ବୁଝି ପାରୁନୁ ମତେ କହ" । ସେ ବସିଲେ, ଓଡ଼ିଆରେ ସବୁ ବୁଝାଇ ଦେଲେ ଓ ମୋର କପି କରିବା ବନ୍ଦ ହେଲା । ସାନ ଭାଇ ଓ ସାଙ୍ଗମାନଙ୍କ ପାଖରେ ମୋର ଇଜ୍ଜତ ରହିଗଲା । ପଢ଼ିଲାବେଳେ ସେ ନିଃସ୍ୱାର୍ଥପର ଭାବେ ବନ୍ଧୁ ମାନଙ୍କୁ ସାହାଯ୍ୟ କରୁଥିଲେ । ତା'ର ଦୃଷ୍ଟାନ୍ତ ହେଲା ମେସ୍‌ରେ ରହି ନିଜର କେତେକ ବନ୍ଧୁ ଯେଉଁମାନେ ସ୍ୱଚ୍ଛଳ ନଥିଲେ ସେମାନଙ୍କୁ ନିଜ ସାଙ୍ଗରେ ରଖିଥିଲେ । କଲେଜର ଛାତ୍ର ସଂଘର ସଭାପତି ଥିଲାବେଳେ ବନ୍ଧୁ ମାନଙ୍କର ଦରମା ଛାଡ଼ ଓ ବହିପତ୍ର ମିଳିବାର ସୁ-ବନ୍ଦୋବସ୍ତ କରି ଦେଉଥିଲେ । କଲେଜ ଆନ୍ଦୋଳନରେ ଯେଉଁମାନେ ଜେଲ୍‌ରେ ଥିଲେ ସେମାନଙ୍କ ପାଇଁ ଖାଦ୍ୟ ଓ ଆଇନ୍‌ଗତ ସହାୟତା ଯୋଗାଇ ଦେଇଥିଲେ ।

ଶେଷରେ, ମୃତ୍ୟୁ ପୂର୍ବରୁ ତାଙ୍କୁ ନିଃସଙ୍ଗତାବୋଧ ଗ୍ରାସ କରିଥିଲା । କାରଣ ଏ ପାର୍ଥିବ ଦୁନିଆଁରେ ଯାହା ପାଖରେ ଧନ ନାହିଁ ତା' ପାଖରେ ଜନ ନାହିଁ । ଯେତେ ଆଦର ଓ ଶ୍ରଦ୍ଧା କଲେ ବି ଲୋକେ ଏକା କରି ଚାଲିଗଲେ । ଏକାକୀତ୍ୱବୋଧ ତାଙ୍କୁ ନିସ୍ତବ୍ଧ କରି ଦେଇଥିଲା । ପିଲାମାନେ ନିଜ ପଢ଼ାରେ ଓ ସ୍ତ୍ରୀ ଚାକିରୀରେ ବ୍ୟସ୍ତ ରହିଲେ ମଧ୍ୟ ତାଙ୍କୁ ଯଥେଷ୍ଟ ସମୟ ଦେଉଥିଲେ । ସେ କିନ୍ତୁ ଭିନ୍ନ ଏକ ମଣିଷ । ବାହାର ଦୁନିଆଁ ହିଁ ତାଙ୍କର ବଞ୍ଚିବାର ପ୍ରାଙ୍ଗଣ । ସେହି ଦୁନିଆଁରେ ସେ ଅଭାବ ଅନୁଭବ କରିଥିଲେ । ନିଜକୁ ସଙ୍କୁଚିତ କରି ଆଣିଥିଲେ ଓ ନିଜର ସ୍ୱପ୍ନ ଓ କଳ୍ପନା ଉଭାନ୍ ହେବାର ଦେଖି ନିସ୍ତ୍ରଭ ହୋଇଯାଇଥିଲେ । ତାଙ୍କର ବ୍ୟକ୍ତିତ୍ୱ ଓ କାର୍ଯ୍ୟ ଦକ୍ଷତା ତୁଳନାରେ ସେ ଦୁନିଆଁକୁ ଖୁବ୍ କମ୍ ଦେଇପାରିଛନ୍ତି ଓ ସେହି ଆତ୍ମଗ୍ଲାନି ତାଙ୍କୁ ବଞ୍ଚିବାର ରାସ୍ତାରୁ ଦୂରେଇ ନେଇଗଲା । ଛଳନାଯୁକ୍ତ ହୀନମନା ଏ ସଂସାର ବୋଧେ ତାଙ୍କୁ ଶ୍ୱାସରୁଦ୍ଧ କରି ଦେଲା । ଆଜି ତାଙ୍କର ଶ୍ରାଦ୍ଧବାର୍ଷିକୀରେ ମୁଁ ମୋର ଅନ୍ତରର ଦୁଃଖପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ରହୁଛି ।

ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ



# ବନ୍ଧୁ ବୈକୁଣ୍ଠ ବାବୁଙ୍କ ସ୍ମୃତିରେ

*ରବିନାରାୟଣ ସେନାପତି*

ବନ୍ଧୁ ବୈକୁଣ୍ଠ ବିଶ୍ୱାଳ ଆମ ଗହଣରେ ନାହାନ୍ତି । ୧୯୯୮ ମସିହାରେ ଏକ ରୌଦ୍ରତପ୍ତ ଅପରାହ୍ଣରେ ସେ ଆମ୍ଭମାନଙ୍କୁ ଛାଡ଼ି ସ୍ୱର୍ଗାରୋହଣ କଲେ । ସେତେବେଳେ ତାଙ୍କର ଅକାଳ ବିୟୋଗ ଆମ ସମସ୍ତଙ୍କ ପାଇଁ ଅତ୍ୟନ୍ତ ଦୁଃଖଦ ଘଟଣା ଥିଲା । କିଛିଦିନ ତଳେ ତାଙ୍କ ସୁପୁତ୍ରୀ ଚେତନା ମୋତେ ଯେତେବେଳେ ଫୋନ୍‌ଯୋଗେ ଏକ ଲେଖାପାଇଁ ଅନୁରୋଧ କଲେ, ସେତେବେଳେ ତାଙ୍କର ଅନୁରୋଧକୁ ରକ୍ଷାକରି ସେହି ପବିତ୍ର ଏବଂ ମହାନ୍ ଆତ୍ମାପାଇଁ ମୋର ହୃଦୟର ଏକ ଭାବପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ନିବେଦନ କରିବାର ଇଚ୍ଛା ଜାଗ୍ରତ ହେଲା । କାରଣ ଛାତ୍ର ଜୀବନରେ ବୈକୁଣ୍ଠବାବୁ ଓ ମୁଁ ସମସାମୟିକ ଥିଲୁ । ଯଦିଚ ଭଦ୍ରକ କଲେଜରେ ସେ ମୋ ଉପର କ୍ଲାସ୍‌ରେ ପଢୁଥିଲେ, ତେବେ ଆମ ଭିତରେ ଏକ ଅନ୍ତରଙ୍ଗ ସମ୍ପର୍କ ଗଢ଼ି ଉଠିଥିଲା । ମୁଁ ଯେତେବେଳେ ଭଦ୍ରକ କଲେଜରେ ପ୍ରାକ୍ ବିଶ୍ୱବିଦ୍ୟାଳୟ କଳା ଶ୍ରେଣୀରେ ନାମ ଲେଖାଇଲି, ସେତେବେଳେ ବୈକୁଣ୍ଠ ବାବୁ ପ୍ରଥମ ବାର୍ଷିକ କଳା ଶ୍ରେଣୀରେ ପଢୁଥିଲେ । ସେତେବେଳେ ଆଜିକାଲି ଭଳି ଯୁକ୍ତ ଦୁଇ ଏବଂ ଯୁକ୍ତତିନି ଆଦି ଶ୍ରେଣୀ ବିଭାଗ ନଥିଲା । ଜଣେ ମେଧାବୀ ଛାତ୍ର, ଛାତ୍ରନେତା ଏବଂ ଉଚ୍ଚକୋଟୀର ବକ୍ତାଭାବେ ବୈକୁଣ୍ଠବାବୁ ସମଗ୍ର କଲେଜରେ ବେଶ୍ ସୁନାମ ଅର୍ଜନ କରିଥିଲେ । ତେଣୁ ତାଙ୍କ ସହ ମିଶିବା ପାଇଁ ମୋ ମନରେ ସ୍ୱତଃ ଆଗ୍ରହ ଥିଲା । ପ୍ରଥମେ ଦେଖାସାକ୍ଷାତ, ପରେ ଆଳାପ ଆଲୋଚନା ମାଧ୍ୟମରେ ତାଙ୍କ ସହ ଏକ ନିବିଡ଼ ସମ୍ପର୍କ ସ୍ଥାପିତ ହୋଇଥିଲା । ତାଙ୍କର ମଧୁର ବ୍ୟବହାର ଏବଂ ଅକୃତ୍ରିମ ସ୍ନେହ ଦ୍ୱାରା ମୁଁ ତାଙ୍କ ପ୍ରତି ଗଭୀର ଭାବରେ ଆକୃଷ୍ଟ ହୋଇଯାଇଥିଲି ।

ମୁଁ ସେତେବେଳେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଗାଁ ତାଳପଦାଠାରେ ପ୍ରତିଷ୍ଠିତ 'କାନ୍ତସାହିତ୍ୟ ସଂସଦ'ର ସମ୍ପାଦକ ଥିଲି । ଥରେ କାନ୍ତକବିଙ୍କ ଜନ୍ମଦିବସ ପାଳନ ଉପଲକ୍ଷେ ଏକ ସାହିତ୍ୟ ସଭାରେ ଅତିଥିଭାବରେ ତାଙ୍କୁ ନେବାପାଇଁ ସ୍ଥିର କଲି । ତାଙ୍କୁ ଯେତେବେଳେ ଅନୁରୋଧ କଲି, ସେ ଆଗ୍ରହର ସହିତ ସମ୍ମତି ଦେଲେ । ତା'ପରେ ଆମେ ଦୁଇଜଣ ସାଙ୍ଗହୋଇ କାନ୍ତ ସାହିତ୍ୟ ସଂସଦର ସେହି ଉତ୍ସବରେ ଯୋଗ ଦେଲୁ । ସେଠାରେ ତାଙ୍କର ଭାଷଣ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲା । ତାଳପଦା ନିକଟରେ ମୋ ନିଜ ଗାଁ । ଉତ୍ସବରୁ ଫେରି ଆମେ ଦୁଇଜଣ ଆମ ଘରକୁ ଗଲୁ ଏବଂ ଆମ ଘରେ ସେ ଆମର ଆତିଥ୍ୟ ଗ୍ରହଣ କଲେ । ପରେ ପରେ ଆମେ ଭଦ୍ରକ ଫେରି ଆସିଲୁ । ଏବେ ବି ସେଦିନର ସ୍ମୃତି ମୋ ମନରେ ଜୀବନ୍ତ ରହିଛି ।

ବୈକୁଣ୍ଠବାବୁ ପ୍ରଥମ ବାର୍ଷିକ କଳା ଶ୍ରେଣୀରେ ବିଶ୍ୱବିଦ୍ୟାଳୟରେ ଜଣେ କୃତୀ ଛାତ୍ରର ଗୌରବ ଅର୍ଜନ କଲେ । ଚାନ୍ସେଲର୍ ଓଡ଼ିଆ ତର୍କ ପ୍ରତିଯୋଗିତାରେ ସ୍ୱର୍ଣ୍ଣପଦକ ହାସଲ କଲେ । ଭଦ୍ରକ କଲେଜର ଛାତ୍ର ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରି ଛାତ୍ର ୟୁନିୟନର ସମ୍ପାଦକ ଏବଂ ପରେ ସଭାପତି ଭାବେ ନିର୍ବାଚିତ ହୋଇଥିଲେ । ସମଗ୍ର କଲେଜର ଛାତ୍ର ମହଲରେ ଜଣେ ସର୍ବଗୁଣସମ୍ପନ୍ନ ଛାତ୍ର ଭାବରେ ସେ ପ୍ରିୟଭାଜନ ହୋଇ ପାରିଥିଲେ । ଭଦ୍ରକ କଲେଜରୁ ଅର୍ଥନୀତି ଅନର୍ସରେ କୃତୀତ୍ୱର ସହ ପାସ୍ କଲାପରେ ସେ ଦିଲ୍ଲୀ ବିଶ୍ୱବିଦ୍ୟାଳୟକୁ ଅଧ୍ୟୟନ ପାଇଁ ଗଲେ । ତା ପରଠୁଁ ତାଙ୍କ ସହ ମୋର ଆଉ ପ୍ରାୟ ସମ୍ପର୍କ ରହିଲା ନାହିଁ ।

ଦୀର୍ଘଦିନର ବ୍ୟବଧାନ ପରେ ମୁଁ ଯେତେବେଳେ ପର୍ଯ୍ୟଟନ ଓ ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଥିଲି, ସେତେବେଳେ ତାଙ୍କଠାରୁ ଏକ ଅପ୍ରତ୍ୟାଶିତ ଚିଠି ପାଇଲି ଏବଂ ତାଙ୍କ ସହ ଯୋଗାଯୋଗ ସ୍ଥାପିତ ହେଲା । ପରବର୍ତ୍ତୀ ସମୟରେ ସେ ଥରେ ସକାଳେ ଆମ ଘରେ ପହଞ୍ଚିଲେ ଏବଂ ତାଙ୍କ ଦ୍ୱାରା ପ୍ରକାଶିତ ଏକ ସମ୍ବାଦପତ୍ର ପାଇଁ ମୋର ସହଯୋଗ କାମନା କରିଥିଲେ । ବ୍ୟସ୍ତବହୁଳ ଜୀବନ ଭିତରେ ତାଙ୍କ ସହ ବହୁବାର ସାକ୍ଷାତ ସମ୍ଭବ ହୋଇନାହିଁ । ମାତ୍ର ଉଭୟଙ୍କ ଭିତରେ ଅନ୍ତରଙ୍ଗତା ଅକ୍ଷୁଣ୍ଣ ରହିଥିଲା ।

ଏହି ଅବସରରେ ବୈକୁଣ୍ଠବାବୁଙ୍କ ସ୍ମୃତି ଉଦ୍ଦେଶ୍ୟରେ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଇ ତାଙ୍କର ପତ୍ନୀ, କନ୍ୟା ଓ ପୁତ୍ରଙ୍କ ପ୍ରତି ମୋର ସମସ୍ତ ସଦିଚ୍ଛା ଜ୍ଞାପନ କରୁଛି ।

ସଚିବ, ସ୍ୱାସ୍ଥ୍ୟ ବିଭାଗ
ଓଡ଼ିଶା ସରକାର



# ବୈକୁଣ୍ଠର ଝିଅ ପାଖକୁ ଚିଠିଟିଏ

*ସନାତନ ମହାନ୍ତି*

ପରମ କଲ୍ୟାଣୀୟା ମା' ଚେତନା,

ତମକୁ ମୁଁ କେବେ ଦେଖିନାହିଁ । ତମ କଣ୍ଠସ୍ୱର ଟେଲିଫୋନ୍‌ରୁ ଶୁଣି ଖୁସିହେଲି । ଦୂର ଅତୀତର ଅନେକ ସ୍ମୃତି ମନ ଆକାଶରେ ଭାସି ଆସିଲା । ତମ ବାପା ଓ ବୋଉ ମୋର ବହୁତ ପ୍ରିୟ ଥିଲେ । ବିଶେଷ ପ୍ରିୟ ଥିଲେ ତମ ବାପା ବୈକୁଣ୍ଠନାଥ ବିଶ୍ୱାଳ । ଭଦ୍ରକ କଲେଜ ଅର୍ଥଶାସ୍ତ୍ର ସମ୍ମାନ ଶ୍ରେଣୀର ଜଣେ ମେଧାବୀ ଛାତ୍ର ଭାବେ ତାଙ୍କ ସହିତ

ମୋର ସମ୍ପର୍କ ଥିଲା ସ୍ୱତନ୍ତ୍ର । କେବଳ ମୁଁ କାହିଁକି, କଲେଜର ସେ କାଳର ଅଧ୍ୟାପକ, ଅଧ୍ୟାପିକା ଓ ବୈକୁଣ୍ଠଙ୍କର ସହପାଠୀ ଛାତ୍ରଛାତ୍ରୀମାନେ ତାଙ୍କୁ ବିଶେଷ ଶ୍ରଦ୍ଧା କରୁଥିଲେ । ଅଧ୍ୟାପକମାନଙ୍କ ଦୃଷ୍ଟିରେ ସେ ଥିଲେ ଜଣେ ପ୍ରତିଭାବାନ୍ ଏବଂ ଉଚ୍ଚାଭିଳାଷୀ ଛାତ୍ର । ରାଜ୍ୟ ଏବଂ ବିଶ୍ୱବିଦ୍ୟାଳୟ ସ୍ତରରେ ଅନୁଷ୍ଠିତ ବାଗ୍ମିତା ପ୍ରତିଯୋଗିତା ମାନଙ୍କରେ ବହୁବାର ପୁରସ୍କୃତ ହୋଇ ସେ କଲେଜ ପାଇଁ ଗୌରବ ଅର୍ଜନ କରିଥିଲେ । ସହପାଠୀମାନଙ୍କ ପାଇଁ ସେ ଥିଲେ ଆଦର୍ଶ ଛାତ୍ର ନେତା ।

୧୯୭୧ ମସିହାରେ ବୈକୁଣ୍ଠ ଭଦ୍ରକ କଲେଜ ଛାତ୍ର ସଂସଦର ସଭାପତି ଭାବେ ନିର୍ବାଚିତ ହୋଇଥିଲେ । ମୁଁ ଥିଲି ସଂସଦର ଉପଦେଷ୍ଟା । ଛାତ୍ର ଛାତ୍ରୀମାନଙ୍କର ତାଙ୍କ ଉପରେ ଅଗାଧ ବିଶ୍ୱାସ ଥିବାର ମୁଁ ଲକ୍ଷ୍ୟ କରିଛି । ନିଜସ୍ୱ ଆଦର୍ଶ ପ୍ରତି ଦୃଢ଼ ନିଷ୍ଠା ସହିତ କର୍ତ୍ତୃପକ୍ଷ ଏବଂ ଗୁରୁଜନ ମାନଙ୍କ ପ୍ରତି ଶାଳୀନ ବ୍ୟବହାର ଥିଲା ତାଙ୍କ ବ୍ୟକ୍ତିତ୍ୱର ବିଶେଷ ଗୁଣ । ଓଡ଼ିଶା ସରକାରଙ୍କ ବିରୋଧରେ ରାଜ୍ୟ ସ୍ତରରେ ଗଢ଼ି ଉଠିଥିବା ଛାତ୍ର ଆନ୍ଦୋଳନରେ ସାମିଲ୍ ହୋଇ ସେ କାରାବରଣ ମଧ୍ୟ କରିଥିଲେ ।

ଭଦ୍ରକ କଲେଜରେ ସ୍ନାତକ ଶିକ୍ଷା ଶେଷକରି ଦିଲ୍ଲୀ ସ୍କୁଲ୍ ଅଫ୍ ଇକନମିକ୍ସରୁ ସ୍ନାତକୋତ୍ତର ଡିଗ୍ରୀ ହାସଲ ପରେ ସେ କାଳରେ ଅନ୍ୟ ଯେ କୌଣସି ମେଧାବୀ ଛାତ୍ର ଅଧ୍ୟାପନା ଅଥବା ସର୍ବଭାରତୀୟ ପ୍ରଶାସନିକ ସେବାରେ ଯୋଗ ଦେବାକୁ ଆଗ୍ରହ ପ୍ରକାଶ କରିବା ଥିଲା ସ୍ୱାଭାବିକ । ମାତ୍ର ସ୍ୱାଭିମାନୀ ଓ ସ୍ୱାଧୀନଚେତା ବୈକୁଣ୍ଠଙ୍କୁ ତାହା ପସନ୍ଦ ନଥିଲା । ଦିଲ୍ଲୀରେ ଅଧ୍ୟୟନ କାଳରେ ସେ ବିଭିନ୍ନ ସାଂସ୍କୃତିକ, ସାମାଜିକ ଏବଂ ସାମ୍ବାଦିକ ସଂଗଠନ ମାନଙ୍କରେ ସାମିଲ୍ ହୋଇଗଲେ । ଦିଲ୍ଲୀ ଭିତ୍ତିକ କେତେକ ସର୍ବଭାରତୀୟ ସମ୍ବାଦ ପତ୍ରିକାର ସମ୍ପାଦନାରେ ଅଂଶଗ୍ରହଣ କରିବାର ସୁଯୋଗ ମଧ୍ୟ ତାଙ୍କୁ ମିଳିଲା । ଶିକ୍ଷା ଶେଷ କରି ଦିଲ୍ଲୀରେ କିଛି କାଳ ରହିବା ଅବସରରେ ରାଷ୍ଟ୍ରୀୟ ଜନନେତାମାନଙ୍କ ସହିତ ତାଙ୍କର ଆଦର୍ଶଗତ ସମ୍ପର୍କ ସ୍ଥାପିତ ହେବାରେ ଲାଗିଲା ।

ଶେଷରେ ବୈକୁଣ୍ଠ ଓଡ଼ିଶାକୁ ନିଜର କର୍ମଭୂମି ଭାବେ ଗ୍ରହଣ କରି ଫେରିଆସିଲେ । ତାଙ୍କ ସହିତ ମୋର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନଥିଲେ ମଧ୍ୟ ସାମ୍ବାଦିକତା କ୍ଷେତ୍ରରେ ତାଙ୍କର ବିଭିନ୍ନ ପରୀକ୍ଷା ନିରୀକ୍ଷା ସମ୍ପର୍କରେ ଦୂରରୁ ଥାଇ ଅବଗତ ଥିଲି । ଭୁବନେଶ୍ୱରରେ ନିଜସ୍ୱ ପ୍ରକାଶନ ସଂସ୍ଥା ପ୍ରତିଷ୍ଠା କରି ନିଜ ସମ୍ପାଦନାରେ 'ଲୋକାଗ୍ନି' ଓ 'ନବ ପ୍ରଭାତ' ଆଦି ଓଡ଼ିଆ ସମ୍ବାଦପତ୍ରିକାମାନ ପ୍ରକାଶ କରି ସେ ଓଡ଼ିଶାରେ ବେଶ୍ ଚାଞ୍ଚଲ୍ୟ ସୃଷ୍ଟି କଲେ । ତାଙ୍କ ସୌଜନ୍ୟରୁ ପତ୍ରିକାର କେତେକ ସଂଖ୍ୟା ମୋର ଦୃଷ୍ଟିଗୋଚର ହୋଇଥିଲା । ମୋର ମନେ ହୁଏ, ପତ୍ରିକା ପ୍ରକାଶନ ସହିତ ରାଜ୍ୟ ତଥା ରାଷ୍ଟ୍ର ରାଜନୀତି ସହିତ ସମ୍ପୃକ୍ତ ହୋଇଯିବା ଥିଲା ତାଙ୍କ ଲକ୍ଷ୍ୟ । ସେଥିପାଇଁ ସେ ଉଭୟ ସାମ୍ବାଦିକତା ଓ ରାଜନୀତି ମଧ୍ୟରେ ସମନ୍ୱୟ ପାଇଁ ଉଦ୍ୟମ ଅବ୍ୟାହତ ରଖିଥିଲେ । ମୋର ବିଶ୍ୱାସ ଏହି ଉଦ୍ୟମରେ ସେ ନିଶ୍ଚୟ ସଫଳ ହୋଇଥାନ୍ତେ । ମାତ୍ର ଦାରୁଣ କାଳ ଏଥିରେ ଅନ୍ତରାୟ

ସୃଷ୍ଟିକଲା । ୧୯୯୮ ମସିହାର ଅସ୍ୱାଭାବିକ ଗ୍ରୀଷ୍ମପ୍ରବାହରେ ଓଡ଼ିଶାରେ ସହସ୍ରାଧିକ ଲୋକ ମୃତ୍ୟୁବରଣ କଲେ । ସେହି ଅଂଶୁଘାତରେ ମେ ମାସ ୨୮ ତାରିଖରେ ମାତ୍ର ୪୭ ବର୍ଷ ବୟସରେ ତାଙ୍କ ଜୀବନ ଦୀପ ଲିଭିଗଲା । ବହୁ ସମ୍ଭାବନାମୟ ଏକ ବିରଳ ବ୍ୟକ୍ତିତ୍ୱର ଅବସାନ ଘଟିଲା । ବୈକୁଣ୍ଠଙ୍କ ଅସଂଖ୍ୟ ବନ୍ଧୁ ଓ ପ୍ରଶଂସକମାନଙ୍କ ସହିତ ତାଙ୍କର ଜଣେ ହିତାକାଂକ୍ଷୀ ଶିକ୍ଷକ ଭାବେ ସେହି ଦାରୁଣ ସମ୍ବାଦରେ ମୁଁ ବ୍ୟଥିତ ହୋଇଥିଲି । ନିଜର ସ୍ୱଳ୍ପ ଆୟୁକାଳରେ ପ୍ରତିଭାଦୀପ୍ତ ବୈକୁଣ୍ଠ ରାଜନୀତି ଓ ସାମ୍ବାଦିକତା କ୍ଷେତ୍ରରେ ଶୀର୍ଷରେ ପହଞ୍ଚିବାପାଇଁ ସଂଘର୍ଷ କରି ଚାଲିଥିଲେ, ଯଦିଓ ସଫଳତାର ସ୍ୱାଦ ଲାଭ କରିବାକୁ ସେ ସମର୍ଥ ହୋଇନଥିଲେ । ସତରେ ସଂଘର୍ଷ ଓ ସଂଗ୍ରାମ ଥିଲା ତାଙ୍କର ପ୍ରକୃତ ପରିଚୟ ।

ଶ୍ରଦ୍ଧାଭାଜନ ବୈକୁଣ୍ଠଙ୍କର ଦେହାନ୍ତର ଦୀର୍ଘ ବର୍ଷପରେ ତାଙ୍କ ଉଦ୍ଦେଶ୍ୟରେ ସ୍ମୃତି ଅର୍ଘ୍ୟ ଅର୍ପଣ ପାଇଁ ଉଦ୍ୟମ କରୁଛ ବୋଲି ଶ୍ରଦ୍ଧେୟ ଦୀନେଶ୍ ଭଟ୍ଟାଚାର୍ଯ୍ୟଙ୍କଠାରୁ ଜାଣି ଖୁସିହେଲି । ତମ ଉଦ୍ୟମର ସଫଳତା କାମନା କରୁଛି । ତମ ବୋଉ ସତ୍ୟଭାମା, ତମ ସ୍ୱାମୀ ଓ ପରିବାରବର୍ଗ ସୁଖରେ ଥାଆନ୍ତୁ, ଏହାହିଁ ପରମେଶ୍ୱରଙ୍କ ନିକଟରେ ମୋର ପ୍ରାର୍ଥନା ।

ଅବସରପ୍ରାପ୍ତ ପ୍ରଫେସର
ଜାନୁଗଞ୍ଜ, ପୋ :ମାଧବନଗର
ଭଦ୍ରକ, ଓଡ଼ିଶା



# ବୈକୁଣ୍ଠଙ୍କୁ ମୁଁ ଆଜି ବି ଖୋଜୁଛି ...

*ଡ: ବସନ୍ତ କୁମାର ଦାସ*

କ୍ଷୀଣ ତନ୍ୱୀ ତରୁଣୀଟିଏ ସବୁଜ ଶେଯରେ ଅଙ୍କା ବଙ୍କା ହୋଇ ଅଳସ ଭାଙ୍ଗିଲା ପରି, ଅମରୀ ଗଛର ଛାପି ଛାପିକା ଅରଣ୍ୟ ଭିତର ଦେଇ ବାଟ କାଟି କାଟି ବହି ଯାଇଛି କ୍ଷୀଣ ସ୍ରୋତା ସାଳନ୍ଦୀ ନଈ । ତଟ ଦେଶର ସଦ୍ୟ କୁସୁମିତ ଘଞ୍ଚ ଆମ୍ରକୁଞ୍ଜର ପେନ୍ଥା ପେନ୍ଥା ବଉଳର ମହକରେ ସୁରଭିତ ହୋଇ ଉଠୁଛି ସାଳନ୍ଦୀର ସର୍ବାଙ୍ଗ । ତାର କେଶର ଅରଣ୍ୟରୁ ଶୀତଳ ପବନ ଆସି ତଟର ସେଇ ଆମ୍ର ବକୁଳର ସୁରଭି ସହିତ ଏକାକାର ହେଉଛି । ସେଇ ସୁରଭିତ ପବନର ଢେଉ ଖେଳି ଯାଉଛି । ଆମ୍ରକୁଞ୍ଜର ଛାୟା ଶୀତଳ ଭଦ୍ରକ କଲେଜ କ୍ୟାମ୍ପସ୍‌ର କୋଣ ଅନୁକୋଣ । ଚାରୋଟି ଛାତ୍ରୀ ହସହସ କଳକଳ ହୋଇ ବାହାରି ଆସିଲେ କେମେଷ୍ଟ୍ରୀ ଲାବୋରେଟୋରୀ ଭିତରୁ । ବାହାରର ବଉଳର ବାସ୍ନା ବୋଧହୁଏ ସେମାନଙ୍କୁ ଆନମନା କଲା । ଆସି ଅଟକି ଗଲେ ବକୁଳ ଭାରରେ ଅବନତ

ଗୋଟିଏ ଆମ୍ରଡ଼ାଳ ପାଖରେ । ଖଣ୍ଡ ଖଣ୍ଡ ବକୁଳ ସ୍ତବକ ତୋଳି ଖୋସି ଚାଲିଲେ ପରସ୍ପରର କବରୀରେ । ଏ ଦୃଶ୍ୟରେ ଅଳ୍ପକ୍ଷଣ ପାଇଁ ମଜ୍ଜି ଯାଇଥିଲି ଲାଇବ୍ରେରୀର ପୋର୍ଟିକୋ ପାଖରେ ମୁଁ, ମନୋବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ । କିଛି କ୍ଷଣପରେ ପ୍ରକୃତିସ୍ଥ ହୋଇ ନିଜର ଏଭଳି ଅନ୍ୟମନସ୍କତାରେ ଅପଦସ୍ତ ହୋଇ ଚାହିଁଲି ମୋର ଚାରିପଟକୁ । କେହି ମୋର ଏପରି ଆନମନା ଭାବକୁ ଲକ୍ଷ୍ୟ କରିଛି କି ? କେହି ତ ନାହାନ୍ତି ଦେଖି ଆଶ୍ୱସ୍ତ ହେଲା ବେଳକୁ ଚମକି ଦେଖିଲି ଅଳ୍ପ ଦୂରରେ ଠିଆ ହୋଇ ଛାତ୍ରଟିଏ ମୁରୁକି ମୁରୁକି ହସୁଛି । ଅପ୍ରତିଭ ହୋଇ ମୁରବୀ ଢ଼ଙ୍ଗରେ ପଚାରିଲି, "ବୈକୁଣ୍ଠ ! ମୋ ପାଖେ କିଛି କାମ ଥିଲା କି ?" ବୈକୁଣ୍ଠ ପାଖକୁ ଆସିଲା । ଆମେ ଦୁହେଁ ଚାଲି ଚାଲି କଥା ହୋଇ କଲେଜ କ୍ୟାମ୍ପସ୍‌ର ପ୍ରବେଶ ପଥଯାଏ ଆସିଲୁ । ଆଜି ବି ମନଶ୍ଚକ୍ଷୁରେ ସ୍ପଷ୍ଟ ଦିଶିଯାଉଛି ।

କୃଷ୍ଣକାୟ କ୍ଷୀଣ ଶରୀର । ପରିଧାନ ଧୋତି ଓ ପୁରା ସାର୍ଟ । ପାଦରେ ଚପଲ । ଅଧିକାଂଶ ସମୟରେ ଆଖି ଦୁଇଟି ଲାଲ୍ ଲାଲ୍ । ମୁଁ ଥରେ ପଚାରିଲି, "ବୈକୁଣ୍ଠ ! ଆଖି ତମର କାହିଁକି ଏମିତି ଲାଲ୍ ପଡ଼ିଥାଏ ?" ସେ ଚିରାଚରିତ ଢ଼ଙ୍ଗରେ ଅବନତ ମସ୍ତକ ହୋଇ ହସି ହସି କହିଲା "ସାର୍ ! ଏ ଲାଲ୍ ସେ ଲାଲ୍ ନୁହେଁ । ମୋ ଆଖି ସେମିତି ଅଧିକାଂଶ ସମୟରେ ଲାଲ୍ ପଡ଼ିଯାଏ ।" ମୁଁ ଶୁଭେଚ୍ଛୁ ସ୍ୱରରେ କହିଲି, "ନାଁ, ନାଁ, ତୁମେ ଡାକ୍ତରଙ୍କ ପାଖରେ ଚେକ୍-ଅପ୍ କରାଅ ।"

କୌଣସି ଏକ ଆଦର୍ଶର ପ୍ରତିଷ୍ଠା ଲାଗି ଅଥବା ଛାତ୍ର ସମାଜର ସ୍ୱାର୍ଥ ସମ୍ବନ୍ଧୀୟ କୌଣସି ଲକ୍ଷ୍ୟ ହାସଲ ଲାଗି ଛାତ୍ରମାନଙ୍କୁ ସଂଗଠିତ କରିବା ଏବଂ ସେମାନଙ୍କୁ ଉଚିତ୍ ଦିଗ୍‌ଦର୍ଶନ ଦେବା ଥିଲା ବୈକୁଣ୍ଠର ଛାତ୍ର ଜୀବନର ଏକ ଆଭିମୁଖ୍ୟ । ସେଥିପାଇଁ ସେ ଭଦ୍ରକ କଲେଜର ରାସ୍ତାରେ ଚାଲି ଚାଲି ଯାଉଥିବା ବେଳେ ତା ସହିତ ଅନ୍ୟୁନ ୫/୬ ଜଣ ଛାତ୍ର ନିଶ୍ଚୟ ଥିବେ । ସେମାନଙ୍କୁ ସେ କଣ ସବୁ ଅନବରତ କହି ଚାଲିଥିବ । ଅନ୍ୟମାନେ ବୈକୁଣ୍ଠର କଥାକୁ ନୀରବରେ ଶୁଣି ଶୁଣି ଚାଲିଥିବେ ଏବଂ ତାର ଦିଗ୍‌ଦର୍ଶନ ସବୁ ଗ୍ରହଣ କରି ନେବା ଭଳି ସମ୍ମତି ଜଣାଉଥିବେ । କଲେଜର ପିଲା ତଥା ସେତେବେଳର ୫ଟା ହଷ୍ଟେଲ୍‌ର ପିଲାମାନଙ୍କ ସହିତ ସୁସମ୍ପର୍କ ରଖିବା, ନିଜ ଆଡୁ ସେମାନଙ୍କ ପ୍ରତି ସ୍ନେହ ଓ ବନ୍ଧୁତାର ହାତ ବଢ଼ାଇ ଦେବା ସଙ୍ଗେ ସଙ୍ଗେ ସେମାନଙ୍କର ସ୍ୱାର୍ଥରକ୍ଷା ଲାଗି କଲେଜ ଅଧକ୍ଷ ଏବଂ ହଷ୍ଟେଲ୍‌ର ସୁପରିଟେଣ୍ଡେଣ୍ଟ ମାନଙ୍କ ପାଖରେ ଅପ୍ରିୟ ହେବାକୁ ତାର ତିଳେ ହେଲେ କୁଣ୍ଠା ନଥିଲା । କେବଳ ଭଦ୍ରକ କଲେଜ ଓ ହଷ୍ଟେଲ୍‌ର ଛାତ୍ର ମାନଙ୍କ ଲାଗି ନୁହେଁ, କଲେଜ କ୍ୟାମ୍ପସ୍‌ର ବାହାରେ ଜଗନ୍ନାଥପୁର, ସାହାପୁର ଏବଂ ଜାନୁଗଞ୍ଜ ଇତ୍ୟାଦିର ମେସ୍ ଗୁଡ଼ିକରେ ରହୁଥିବା ଛାତ୍ରମାନଙ୍କର ସମସ୍ୟା ଗୁଡ଼ିକୁ ମଧ୍ୟ ଆବୋରି ଧରି ନିଜର ମସ୍ତିଷ୍କକୁ ଭାରାକ୍ରାନ୍ତ କରିବାରେ ତାର ଥିଲା ଏକପ୍ରକାର ଆତ୍ମସନ୍ତୋଷ ।

ମୁଁ ପଚାରେ "ବୈକୁଣ୍ଠ ! ଏତେ ଆଡ଼େ ଏତେ କଥାରେ ବ୍ୟସ୍ତ ରହୁଛ । ପାଠ କେତେବେଳେ ପଢୁଛ ?" ସେ କହେ "ସାର୍ ! ପଢୁଛି, ଆପଣଙ୍କୁ ରେଜାଲ୍ଟ ଦେଖାଇଲେ

ହେଲା ତ !" ଛାତ୍ରମାନଙ୍କ ଗହଣରେ ରାସ୍ତାରେ ଗପି ଗପି ଚାଲିଥିଲା ବେଳେ ଅକସ୍ମାତ୍ ମୁଁ ସେଇବାଟେ ଅତିକ୍ରମ କରୁଥିବାର ଦେଖିଲେ ମୋ ଉଦ୍ଦେଶ୍ୟରେ ହସହସ ଅବନତ ମସ୍ତକ ସହିତ ନମସ୍କାର ଟିଏ ଥାଏ । ମୁଁ ସାଇକେଲ୍‌ରୁ ଓହ୍ଲାଇ ପଡ଼ି ତା ପାଖକୁ ଆସିଲେ ସେ କହେ, "ସାର୍! ପାଠ ଠିକ୍ ପଢୁଛି । ପାଠଛଡ଼ା ଆଉ କଣ କୁହନ୍ତୁ" । ସେତେବେଳେ ଜଣେ ଅଧ୍ୟାପକ ପାଖରେ ଜଣେ ଛାତ୍ରର ଏଭଳି ନିର୍ଭୟ ସ୍ପଷ୍ଟବାଦିତା ବାସ୍ତବିକ ମୋତେ ଆଶ୍ଚର୍ଯ୍ୟ କରୁଥିଲା । ବାସ୍ତବରେ ପରୀକ୍ଷାରେ ସେ ଖୁବ୍ ଭଲନମ୍ବର ରଖୁଥିଲା । ବିଶେଷତଃ ମନୋବିଜ୍ଞାନ ବିଷୟରେ ସେ ଅନେକ ଥର ଟପ୍ କରିଛି । ସେ କେମିତି ଜାଣି ପାରୁଥିଲା ମୁଁ ତାକୁ ଶ୍ରଦ୍ଧା କରେ, ତାର ନିଃସ୍ୱାର୍ଥପର ସ୍ୱଭାବ ଏବଂ ପରାର୍ଥ ବ୍ୟକ୍ତିତ୍ୱକୁ ପସନ୍ଦ କରେ ଏବଂ ତାର ଜଣେ ଶୁଭେଚ୍ଛୁ ହିସାବରେ ତାର ସ୍ୱାଧୀନଚେତା ବ୍ୟକ୍ତିତ୍ୱକୁ ଭଲପାଏ । ସେ ମୋତେ ଯେମିତି ଠକ୍ ବୁଝିଥିଲା, ମୁଁ ତାକୁ ସେମିତି ଠିକ୍ ବୁଝିଥିଲି । ଏହିପରି ସଠିକ୍ ବୁଝାମଣାର ଏକ ଅଦୃଶ୍ୟ ସୂତ୍ର ଆମ ଦୁହିଁଙ୍କୁ କେମିତି ବାନ୍ଧି ରଖିଥିଲା । ଯେଉଁଦିନ ସେ ମୋତେ କଲେଜରେ ଦେଖି ନଥିବ, ତା'ପର ଦିନ ମୋତେ ପଚାରିବ, "ସାର୍! କାଲି କାହିଁକି କଲେଜ ଆସି ନଥିଲେ ? କଣ ଦେହ ଖରାପ ଥିଲା କି ?" ଏହିଭଳି କଲେଜ କ୍ୟାମ୍ପସ୍ ଭିତରେ ମୁଁ ତାର ଏବଂ ସେ ମୋର ଉପସ୍ଥିତି ଓ ଅନୁପସ୍ଥିତି ସମ୍ପର୍କରେ ସଚେତନ ଥିଲୁ । ଜଣେ ଛାତ୍ର ଓ ଜଣେ ଶିକ୍ଷକ ଭିତରେ ପରସ୍ପରକୁ ଲୋଡ଼ିବା ପଣ ଛଡ଼ା ଇଏ ଆଉ କଣ ହୋଇପାରେ ?

ସ୍ୱାଧୀନଚେତା ବୈକୁଣ୍ଠ କେବଳ ଯେ ଦିବାସ୍ୱପ୍ନରେ ମଗ୍ନ ରହୁଥିଲା, ଏକଥା ନୁହେଁ । ସେ ତାର ସ୍ୱାଧୀନ ଏବଂ ସୃଜନାତ୍ମକ ଚିନ୍ତାଧାରାକୁ ବାସ୍ତବରୂପ ଦେବା ଲାଗି ନିଜର ଜୀବନକୁ ଉତ୍ସର୍ଗ କରିଥିଲା । ଦିଲ୍ଲୀ ସ୍କୁଲ ଅଫ୍ ଇକୋନୋମିକ୍ସରୁ ସ୍ନାତକୋତ୍ତର ଶିକ୍ଷା ଶେଷ କରିବା ପରେ ସେ ସାଂସାରିକ ଲାଭ କ୍ଷତିକୁ ବିଚାରକରି, ସାମାଜିକ ପ୍ରତିଷ୍ଠା, ଯଶ, କ୍ଷମତା, ସମୃଦ୍ଧି ତଥା ବୈଷୟିକ ପ୍ରାଚୁର୍ଯ୍ୟ ସବୁକୁ ଜୀବନରେ ଅଗ୍ରାଧିକାର ଦେଇ କେତେ କଣ କରିପାରି ଥାନ୍ତା ଏବଂ କୋଉ ଉଚ୍ଚ ସ୍ତରରେ ଯାଇ ପହଞ୍ଚି ପାରିଥାନ୍ତା । ମାତ୍ର ତା ଜୀବନରେ ଅନେକ ଭିନ୍ନ ସ୍ୱପ୍ନ ଥିଲା । ତେଣୁ ସୁଖ ସମୃଦ୍ଧି ଓ ପ୍ରାଚୁର୍ଯ୍ୟମୟ ଜୀବନର ଲାଳସାରେ ତାର ସ୍ୱପ୍ନ ରାଜ୍ୟରେ ଫୁଟି ଆସୁଥିବା କଢ଼ି ଗୁଡ଼ିକୁ ଡାଳରୁ ନିର୍ଦ୍ଦୟରେ ଛିଣ୍ଡାଇ ଫିଙ୍ଗି ଦେବାକୁ ଚାହିଁଲା ନାହିଁ । ଜଣେ ଗତାନୁଗତିକ ସଫଳ ସଂସାରୀ ହେବାପାଇଁ ନିଜର ସ୍ୱପ୍ନକୁ ସେ ହତ୍ୟା କରି ପାରିଲା ନାହିଁ । ପଥ ଦୁର୍ଗମ ହେଲେ ବି ସେ ଅଗ୍ନିପଥର ଯାତ୍ରୀ ହେବାର ସାଧନାମୟ ଜୀବନକୁ ବାଛି ନେଲା । ଏଥିପାଇଁ ମନରେ ତାର ତିଳେ ମାତ୍ର ଅବଶୋଷ ନଥିଲା କି କିଛି ଅନୁତାପ ନଥିଲା । ବରଂ ଏଭଳି ଏକ ଜୀବନ ଲାଗି ତାର ପ୍ରଚଣ୍ଡ ଆତ୍ମବିଶ୍ୱାସ ଏବଂ ଆଶାବାଦ ସହିତ ଆପଣାର ସଂଗ୍ରାମମୟ ଜୀବନର ନିଶ୍ଚିତ ସଫଳତାର ସ୍ୱପ୍ନରେ ସେ ସଦା ସର୍ବଦା ବିଭୋର ରହୁଥିଲା । ଠିକ୍ ଯେମିତି କାର୍ଲମାକ୍ସଙ୍କ ପାଖରେ ମୃତ ପୁତ୍ରର କଫିନ ତିଆରି ଲାଗି ଅର୍ଥ ନଥିଲା, ମାତ୍ର ସେ ଲେଖିଗଲେ ଅର୍ଥଶାସ୍ତ୍ରର ଅମର ଗ୍ରନ୍ଥ ଯାହା ସେ ସମୟର ସାମାଜିକ ବ୍ୟବସ୍ଥାକୁ ବଦଳାଇ ଦେଲା ଏବଂ ସେ ଦୁନିଆକୁ ଦେଇଗଲେ

ସାମ୍ୟବାଦର ଶିକ୍ଷା ଓ ମହିମା । ତେଣୁ କାର୍ଲମାକ୍ସ ହୁଅନ୍ତୁ ଅଥବା ବୈକୁଣ୍ଠ ହେଉ, ବ୍ୟକ୍ତିଗତ ସ୍ୱାର୍ଥକୁ ନିର୍ଦ୍ଦୟ ଭାବରେ ତ୍ୟାଗ ନକଲେ କେହି କୌଣସି ମହତ୍ କାର୍ଯ୍ୟ କରି ପାରିବ ନାହିଁ ।

ବୈକୁଣ୍ଠର ସକାରାତ୍ମକ ମନୋବୃତ୍ତି ଏତେ ବଳିଷ୍ଠ ଯେ ସେ ନିଜ ଉପରେ ଆସ୍ଥା ଓ ବିଶ୍ୱାସ ରଖିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କ ଉପରେ ମଧ୍ୟ ଅନୁରୂପ ଆସ୍ଥା ଓ ବିଶ୍ୱାସ ରଖିଥିଲା । ତାର ଦୃଷ୍ଟିକୋଣ ଭୀଷଣ ମାନବଧର୍ମୀ । ସେ ସଦାସର୍ବଦା କହୁଥିଲା ଯେ ମଣିଷ ହିଁ ଦୁନିଆରେ ପ୍ରଥମ ଯାହା ସହିତ ଭଲ ପାଇବାର ଦିଆନିଆ ହୋଇ ପାରିବ, ଯାହାର ସେବା କରି ହେବ, ଯାହାକୁ ସମ୍ମାନ ଦେଇ ହେବ, ଭକ୍ତି କରି ହେବ ଏବଂ ଏପରି କେତେକ ମଣିଷ ଅଛନ୍ତି, ଯାହାଙ୍କୁ ପୂଜାବି କରି ହେବ । ଯଦି ଆମର ହାତ ପାଆନ୍ତାରେ ଜୀବନ୍ତ ଦେବତା ବିଦ୍ୟମାନ, ତେବେ ମନ୍ଦିରର ସେ ମିଛଦେବତା ପାଖକୁ ଅନୁକମ୍ପା ପାଇଁ ଧାଇଁବାର ଆବଶ୍ୟକତା କଣ ଅଛି ? ସେ କଣ ମଣିଷ ସହିତ ହସେ ? ମଣିଷର ଲୁହ ସହିତ ଲୁହ ମିଶାଏ ? ମଣିଷର ସୁଖଦୁଃଖରେ ଅଂଶୀଦାର ହୁଏ ? ଆମର କଷ୍ଟସାଧ୍ୟ ତଥା ଦୁର୍ଲଭ ଭଲପାଇବାକୁ ଏପରି ଅପାତ୍ରରେ ଦାନ କରିବା କଣ ନିର୍ବୋଧତା ନୁହେଁ ? ବୈକୁଣ୍ଠ ଭଗବାନ, ଭାଗ୍ୟ, ଆତ୍ମା, ପରମାତ୍ମା ଏବଂ ପୁନର୍ଜନ୍ମ ଇତ୍ୟାଦିକୁ ଅନ୍ଧବିଶ୍ୱାସ, କୁସଂସ୍କାର ଓ ଭ୍ରାନ୍ତ ଧାରଣା ବୋଲି ଗ୍ରହଣ କରିଥିଲା । ସେ କହୁଥିଲା ଏସବୁ କେବଳ କେତେକଙ୍କର ଅସହାୟ ମନର ବିଶ୍ୱାସର ବସ୍ତୁ ଏବଂ ଆମ ସମାଜର ଅବୈଜ୍ଞାନିକ ମନୋବୃତ୍ତିର ପରିପ୍ରକାଶ । ଏଇସବୁ ପ୍ରସଙ୍ଗରେ ତା ସହିତ ମୋର ମନୋବୃତ୍ତିର ସମ୍ପୂର୍ଣ୍ଣ ମେଳ ଥିଲା ଏବଂ ଆମେ ଦୁହେଁ ଶିକ୍ଷକ-ଛାତ୍ରର ସାମାଜିକ ତଥା ମାନସିକ ବ୍ୟବଧାନ ଭୁଲି ଖାଣ୍ଟି ସମାଜବିଜ୍ଞାନୀ ଭଳି ଘଣ୍ଟା ଘଣ୍ଟା ଧରି ଆଲୋଚନା କରୁଥିଲୁ । ସେ ଥରେ ଅକୃତ୍ରିମ ଭାବେ ବ୍ୟସ୍ତ ହୋଇପଡ଼ି କହିଲା "ସାର୍ ଆମେ ତ ମନୋବିଜ୍ଞାନ ଓ ସମାଜ ବିଜ୍ଞାନ ସବୁ ପଢ଼ିଲେ । ଆମେ କଣ ଆମର ଏ କୁସଂସ୍କାର ଗ୍ରସ୍ତ ରୁଗ୍ଣ ସମାଜକୁ ଏବଂ ଏ ଅନ୍ଧବିଶ୍ୱାସଗ୍ରସ୍ତ ଦୁଃଖୀ ମଣିଷକୁ ତାର ଅବୈଜ୍ଞାନିକ ଧାରଣାର ସମ୍ମୋହନରୁ କୌଣସି ମତେ ଉଦ୍ଧାର କରି ପାରିବା ନାହିଁ !"

ଏକଥା ସତ ଯେ କେତେକ ଶିକ୍ଷକ ଅଛନ୍ତି ଯେଉଁମାନେ ଆପଣା ଜ୍ଞାନ, ପ୍ରତିଭା, ସଦ୍‌ଗୁଣ, ନିଷ୍ଠାପର ଓ ଉତ୍କୃଷ୍ଟ ଶିକ୍ଷାଦାନ ପାଇଁ ଛାତ୍ରମାନଙ୍କର ଚିରସ୍ମରଣୀୟ । ଠିକ୍ ସେମିତି ଏକଥା ବି ସତ ଯେ ଅନେକ ଛାତ୍ର ଅଛନ୍ତି ଯାହାଙ୍କର ବୌଦ୍ଧିକତା, ନିଷ୍ଠା, ଅଧ୍ୟବସାୟ, ମାନବିକତା, ଶିକ୍ଷା ଗ୍ରହଣ ପ୍ରତି ଆଗ୍ରହ, ସ୍ୱାଧୀନଚେତନା ଏବଂ ସୃଜନାତ୍ମକ ଦୃଷ୍ଟିଭଙ୍ଗୀ ଲାଗି ସେମାନେ ଅନେକ ଶିକ୍ଷକଙ୍କର ଅବିସ୍ମରଣୀୟ । ଯେମିତି ପ୍ରତିଭାବାନ୍ ଶିକ୍ଷକଙ୍କର ମୁଗ୍ଧ ଛାତ୍ର ଅଛନ୍ତି, ସେହିପରି କେତେକ ଅସାଧାରଣ ଛାତ୍ରଙ୍କର ମୁଗ୍ଧ ଶିକ୍ଷକ ବି ଅଛନ୍ତି । ବୈକୁଣ୍ଠ ଥିଲା ସେହିଭଳି ଏକ ଅତି ସରଳ, ନିରାଡ଼ମ୍ବର ଜୀବନଶୈଳୀ ସମ୍ପନ୍ନ ଅଥଚ ପ୍ରତିଭାଦୀପ୍ତ ବ୍ୟକ୍ତିତ୍ୱ, ଅସାଧାରଣ ବୌଦ୍ଧିକତା ସହିତ ପରାର୍ଥ ଜୀବନ ଯାପନର ଏକ ଦୁର୍ଲଭ ସମନ୍ୱୟ ଏବଂ ସର୍ବୋପରି ଜଣେ ସମ୍ବେଦନଶୀଳ ଶିକ୍ଷକର ପ୍ରାଣ ପାତ୍ରକୁ ପୂର୍ଣ୍ଣ କରି ତାର ଶିକ୍ଷକ ଜୀବନକୁ ସାର୍ଥକ କରି ଦେଲା ଭଳି ଜଣେ ଯୋଗଜନ୍ମା ଛାତ୍ର । ପାଉଁଶ ଗଦା

ଭିତରୁ ନିଆଁର ଝୁଲ ସବୁ ସାଉଁଟି ଠୁଳ କଲାପରି ଆଜି ତା ବିଷୟରେ ସ୍ମୃତି ଚାରଣ କରିବା ବେଳେ ମୋତେ ଲାଗୁଛି ସେ ମୋ ପାଖରେ ବସି ମୋତେ ଗୋଟି ଗୋଟି କରି ସବୁ ମନେ ପକାଇ ଦେଉଛି ।

ଏଇ ବୈକୁଣ୍ଠକୁ ଭଦ୍ରକ ଛାଡ଼ିଲା ପରେ ମନେ ମନେ କେତେ ଖୋଜିଛି । ଏଇ ଟଙ୍କପାଣି ରୋଡ୍‌ରେ ଏକ ଭଡ଼ାଘରେ ମୁଁ ରହିବା ପରେ ଖବର ପାଇଲି ବୈକୁଣ୍ଠ ଏଇଠି କୋଉଠି ରହୁଛି । ମୋର ଆନନ୍ଦର ସୀମା ରହିଲା ନାହିଁ । ମାତ୍ର ଏକ ଜରୁରୀ ପରିସ୍ଥିତିରେ ପଡ଼ି ମୋର ପୁଅ ମାନଙ୍କ ପାଖକୁ ହଠାତ୍ ଆମେରିକା ଯିବାକୁ ପଡ଼ିଲା । ତେଣୁ ବୈକୁଣ୍ଠ ସହିତ ସାକ୍ଷାତ କରିବାର ଅଦମ୍ୟ ଇଚ୍ଛାକୁ ଅବଦମିତ କରିବାକୁ ପଡ଼ିଲା । ଭାବିଲି ଠିକ୍ ଅଛି । ଫେରିବା ପରେ ଦେଖା କରିବି । ମାତ୍ର ୬ ମାସ ପରେ ଭୁବନେଶ୍ୱର ଫେରିବା ବେଳକୁ ଶୁଣିଲି ବୈକୁଣ୍ଠ ଆଉ ନାହିଁ । ଏ ଦୁନିଆକୁ ତ୍ୟାଗ କରି ଅନାସକ୍ତ ଭାବେ ଯୁଧିଷ୍ଠିରଙ୍କ ପରି ମହାଯାତ୍ରା କରିଛି । ଭୀଷଣ ଆଘାତ ପାଇଲି ମନରେ । ଖୁବ୍ ହନ୍ତସନ୍ତ ହେଲି । କିନ୍ତୁ କଣ ହେବ ? ସବୁ ବ୍ୟର୍ଥ ସିନା ! ତାର ଚେହେରା, ହସ ହସ ଅବନତ ମୁଖ ଏପର୍ଯ୍ୟନ୍ତ ମୋ ମନଶ୍ଚକ୍ଷୁରେ ସ୍ପଷ୍ଟ ଦିଶି ଯାଉଛି । ଭଦ୍ରକ କଲେଜ ଛାଡ଼ିବା ପରେ ଆଜି ପର୍ଯ୍ୟନ୍ତ ଅଗଣିତ ଛାତ୍ରଙ୍କ ସଂସ୍ପର୍ଶରେ ଆସିଛି । ଅନେକ ଛାତ୍ରଙ୍କ ପଠନ ନିଷ୍ଠା, ଅଧ୍ୟବସାୟ, ଉଚ୍ଚାଭିଳାଷ ଏବଂ ଅନ୍ୟାନ୍ୟ ଗୁଣରେ ମୁଗ୍ଧ ହୋଇଛି ଏବଂ ଏଇଭଳି ଛାତ୍ର ମାନଙ୍କର ଶିକ୍ଷକ ହେବାର ସୌଭାଗ୍ୟ ଜୀବନରେ ପାଇଛି ବୋଲି ନିଜ ଜୀବନକୁ ସାର୍ଥକ ମଣିଛି । ହେଲେ କେତେକ ଦୁର୍ଲଭ ଓ ଅନୁପମ ଗୁଣର ସମନ୍ୱୟ ସମ୍ପନ୍ନ ଜଣେ ବୈକୁଣ୍ଠକୁ ମୋର ଅଗଣିତ ଛାତ୍ର ଜନତା ଭିତରୁ ଆଜି ପର୍ଯ୍ୟନ୍ତ ବି ମୁଁ ଖୋଜୁଛି ।

କନ୍‌ସଲ୍‌ଟିଂ ସାଇକୋଲଜିଷ୍ଟ
ଚେତନା ମାନସିକ ଅନଗ୍ରସରତା ପ୍ରତିଷ୍ଠାନ
ନୟାପଲ୍ଲୀ, ଭୁବନେଶ୍ୱର



## ଶୁଭାକାଂକ୍ଷା ସହିତ

***ଦୋଳଗୋବିନ୍ଦ ଶାସ୍ତ୍ରୀ***

**ସ**ତ୍ୟା ବି.ଏଡ୍. ପରୀକ୍ଷାବେଳେ ମୋର ପାରେଶ୍ୱର ସାହିଘରେ ଏକ ସପ୍ତାହ ପାଇଁ ରହିଥିଲା । ସେତେବେଳେ ମଧ୍ୟ ମୁଁ ବୈକୁଣ୍ଠର ପ୍ରତିଭାର ପରିଚୟ ପାଇ ସାରିଥିଲି । ଏବଂ ବିଦ୍ୟାଧର ବାବୁଙ୍କ ଲେଖାଟି ପଢ଼ି ମୁଁ ନିଶ୍ଚିନ୍ତ ହେଲି ଯେ, ବୈକୁଣ୍ଠ ସତ୍ୟାକୁ ନିରାଶ କରିନାହିଁ । ନିଜ ଅବର୍ତ୍ତମାନରେ ତିନୋଟି ରତ୍ନ ସେ ରଖିଦେଇ ଯାଇଛି । ବୈକୁଣ୍ଠ ତାର ବିବାହରେ ମୋତେ ଆମନ୍ତ୍ରଣ କରିଥିଲା । ମୁଁ ଯାଇ ନ ପାରିବାର ଯେଉଁ ଦୁଃଖ, ତା ଉପରେ ତାର ଆକସ୍ମିକ ମହାପ୍ରୟାଣ - ଏଇ ଦୁଃଖ ଏବେ ଲାଘବ ହୋଇଛି ଏଇଲେଖାଟି ପାଠକରି । ସତ୍ୟା ଓ ତାର ଦୁଇ ସନ୍ତାନମାନଙ୍କ ପାଇଁ ଈଶ୍ୱରଙ୍କ ଠାରେ କାତର ପ୍ରାର୍ଥନା ଜଣାଇ ରହିଲି ।

ଅବସରପ୍ରାପ୍ତ ପ୍ରଫେସର, କଟକ

# ଗୋଟିଏ ଅନନ୍ୟ ଛାତ୍ରର ସ୍ମରଣେ

*ବିଦ୍ୟାଧର ନାୟକ*

ମୁଁ ଭଦ୍ରକ କଲେଜରେ ଅର୍ଥନୀତି ବିଭାଗରେ ଅଧ୍ୟାପକ ଥିଲାବେଳେ ବୈକୁଣ୍ଠ ସେଇ କଲେଜର ଅର୍ଥନୀତିର ସମ୍ମାନ ଶ୍ରେଣୀର ଛାତ୍ର ଥିଲା । ତେଣୁ ମୋର ଓ ବୈକୁଣ୍ଠ ମଧ୍ୟରେ ଶିକ୍ଷକ ଓ ଛାତ୍ରର ସମ୍ପର୍କ । ପାଠ୍ୟକ୍ରମର ପୁସ୍ତକ ଗୁଡ଼ିକର ଆଲୋଚନା କରିବା ବ୍ୟତୀତ ତାର ଭାବଧାରାକୁ ପ୍ରଭାବିତ କରିବାର ଜ୍ଞାନ ବା ସାହସ ମୋ ପାଖରେ ନଥିବାର ମୁଁ ବହୁ ସମୟରେ ଅନୁଭବ କରିଛି । Classical Economics ର ଆଲୋଚନା ବଜାର ଭିତ୍ତିକ ଚାହିଦା ଓ ଯୋଗାଣ ସୂତ୍ର ଦ୍ୱାରା ସୀମାବଦ୍ଧ ଅଟେ । ପୁଞ୍ଜିବାଦ ସମାଜର ବୈଶିଷ୍ଟ୍ୟ ତଥା ଏହାର କାର୍ଯ୍ୟ କରିବାର ପ୍ରଣାଳୀ ବିଶେଷ ଭାବରେ ଶ୍ରେଣୀରେ ଆଲୋଚିତ ହୋଇଥାଏ । ବୈକୁଣ୍ଠ କିନ୍ତୁ ମାର୍କସ୍‌ଙ୍କ ଚିନ୍ତାଧାରାର ପୂର୍ଣ୍ଣ ବିଶ୍ୱାସୀ ଥିଲା ତଥା ଏହାର ସଫଳ କାର୍ଯ୍ୟକାରିତା ଉପରେ ତା'ର ଦୃଢ଼ ଆତ୍ମପ୍ରତ୍ୟୟ ଥିଲା । ମାତ୍ର ଶ୍ରେଣୀ ମଧ୍ୟରେ ଆଲୋଚନା ବେଳେ ସେ କେବେହେଲେ ବି ନିଜର ସ୍ୱମତ ଉପସ୍ଥାପନା କରିବାର ମୁଁ ଦେଖିନାହିଁ । ଛାତ୍ର ମହଲରେ ନିଜର ପତିଆରା ବଢ଼ାଇବାର ମୁଁ ଦେଖିନାହିଁ । ଏହା କେବଳ ମୋର ମତ ନୁହେଁ ଆମ departmentର ସମସ୍ତ ଶିକ୍ଷକଙ୍କର ମତ ।

ତା ମଧ୍ୟରେ ଥିବା ଅନ୍ତର୍ନିହିତ ଗୁଣର ଆଭାସ ମାତ୍ର ମୁଁ ପାଇଛି । ତାହାକୁ ଠିକ୍ ଠିକ୍ ଭାବରେ ବୁଝିବା ଓ ଉପସ୍ଥାପନା କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ତେବେ ମୁଁ ଏତିକି ଜାଣିଛି ଯେ ତା ପାଖରେ ଥିବା ଗୁଣ ଗୁଡ଼ିକ ତାର ଅଧ୍ୟବସାୟର ଫଳ ନୁହେଁ । ସେ ଗୁଡ଼ିକ ଜନ୍ମଗତ ଗୁଣ । ଯାହା inborn quality ବୋଲି କୁହାଯାଇପାରେ । ବହୁତ ସଦ୍‌ଗୁଣ ଓ ସତ୍‌ସାହସର ଅଧିକାରୀ ହୋଇଥିଲେ ମଧ୍ୟ ଅନ୍ୟ ଆଗରେ ଅତି ସାଧାରଣ ଛାତ୍ରଟିଏ ପରି ନିଜକୁ ଉପସ୍ଥାପନା କରିବା ତାହାର ସ୍ୱତନ୍ତ୍ର ଗୁଣ ଥିଲା ।

ବୈକୁଣ୍ଠ ମୋର ବିଶେଷ ଦୃଷ୍ଟି ଆକର୍ଷଣ କଲା ଯେଉଁଦିନ ସେ ଗଭର୍ଣ୍ଣରଙ୍କ ଦ୍ୱାରା ପୁରସ୍କୃତ ହୋଇ ସୁନାର ମେଡ଼ାଲଟିକୁ ଛାତିରେ ଲଗାଇ କଲେଜ ଛକରେ ସାଙ୍ଗମାନଙ୍କ ସାଥିରେ ବୁଲୁଥିଲା । ନମସ୍କାର କଲାପରେ debate competition ବିଷୟରେ ବହୁତ କଥା କହିଲା । ସେତେବେଳକୁ ସେ ପୁରା କଲେଜ ଭିତରେ ଛାତ୍ର, ଶିକ୍ଷକ ତଥା ସାଧାରଣ ଲୋକଙ୍କର ଆଲୋଚନାର ବ୍ୟକ୍ତି ହୋଇଯାଇଥାଏ, ସେଦିନ ସେ ବହୁତ ଖୁସି ଥାଏ । ତାକୁ ମୁଣ୍ଡକୁ ଉପରକୁ ଟେକି କଥା କହିବାର ମୁଁ କେବେ ଦେଖିନାହିଁ ।

ଗ୍ରୀଷ୍ମାବକାଶର ଅଳ୍ପ କିଛିଦିନ ପୂର୍ବର କଥା । କଲେଜରେ ଆଉ ପଢ଼ାପଢ଼ି ହେଉନଥାଏ । କଲେଜ ପରିସର ମଧ୍ୟରେ ଗୋଟିଏ Private ଘରେ ମୁଁ ରହୁଥାଏ ।

ପରିବାରର ସମସ୍ତେ ଗାଁକୁ ଚାଲିଯାଇଥାଆନ୍ତି । ଗୋଟିଏ ପିଲା ମୋତେ ରୋଷେଇ କରି ଖାଇବାକୁ ଦେବାକୁ ଥାଏ । Class ପାଇଁ ପ୍ରସ୍ତୁତି ହେବାର ଆବଶ୍ୟକତା ନଥିବାରୁ ମୁଁ ବୁଲାବୁଲି କରି ଟିକେ ଡେରିରେ ଫେରିଲି । ପ୍ରାୟ ରାତି ୯ଟା ହେବ । ଘରେ ପହଞ୍ଚିଲା ମାତ୍ରେ ଦେଖିଲି ତିନିଜଣ ପିଲା ଘରର ବାହାର ବାରଣ୍ଡାରେ ସପ ଖଣ୍ଡିଏ ପକାଇ ଶୋଇଛନ୍ତି । ମୋତେ ଦେଖି ସେମାନେ ଚଟାପଟ୍ ଉଠିପଡ଼ି ନମସ୍କାର କଲେ । ଦେଖିଲି ସେମାନେ ହେଉଛନ୍ତି Economics honours ର ଛାତ୍ର - ଦିଲୀପ, ଦୀନେଶ ଓ ବୈକୁଣ୍ଠ । ସେମାନେ ଥିଲେ ଗୋଟିଏ ସାମାଜିକ ଓ ଅର୍ଥନୈତିକ ଚିନ୍ତାଧାରାର ସମର୍ଥକ । ମୁଁ ମନେ ମନେ ବହୁତ ଖୁସି ହୋଇଗଲି । ପର ମୁହୂର୍ତ୍ତରେ ସେମାନେ କ'ଣ ଖାଇବେ ବୋଲି ପଚାରିବାରୁ ସେମାନେ କହିଲେ ଯେ ଆମ ପିଲାକୁ କହି ଖାଇବାର ସମସ୍ତ ବନ୍ଦୋବସ୍ତ କରିସାରିଛନ୍ତି । ମୁଁ ଟିକେ ଆଶ୍ୱସ୍ତ ହେଲି । କେତେ କୁଆଡୁ କଥାସବୁ ପଡ଼ିଲା । ବୈକୁଣ୍ଠ କିଛି କହୁନଥାଏ । ଅନ୍ୟ ଦୁଇ ବନ୍ଧୁ ତାକୁ ପ୍ରଶଂସା କରିବାରେ ଶତମୁଖ ହୋଇ ପଡୁଥାଆନ୍ତି । ବୈକୁଣ୍ଠ ତାଙ୍କ ଉପରେ କୃତ୍ରିମ ରାଗ ପ୍ରକାଶ କରୁଥାଏ । ଏ ସମସ୍ତ ମୁଁ ଆନନ୍ଦ ସହକାରେ ଉପଭୋଗ କରୁଥାଏ । ସେମାନେ ବହୁତ ଖୁସି ଥିଲେ । ମୁଁ ମଧ୍ୟ ଛାତ୍ର ଶିକ୍ଷକର ଗଣ୍ଡିମଧ୍ୟରେ ନରହି କେତେ ଅଦରକାରୀ ଆଲୋଚନାରେ ମାତି ଉତ୍‌ଫୁଲ୍ଲିତ ହୋଇ ଉଠୁଥାଏ ।

ଶେଷରେ ଆମେ ସମସ୍ତେ ଖାଇ ବସିଲୁ । ମୋ ସାମନାରେ ସେ ତିନିଜଣ ବସିଥାଆନ୍ତି । ପୁଣି ଗପର ଆସର ଜମିଗଲା । କିଛି କାରଣ ନଥାଇ ମୁଁ କହିଲି, "ବୈକୁଣ୍ଠ, ତୁମେ ତୁମ ଭବିଷ୍ୟତ ଜୀବନରେ ବହୁତ ଲୋକଙ୍କୁ ଠକିବ, ନିରାଶ କରିବ । କାହାକୁ ନ ହେଲେ ବି ତୁମ ଧର୍ମପତ୍ନୀକୁ ନିଶ୍ଚୟ ନିରାଶ କରିବ । ସେ ତୁମକୁ ଚାତକ ପରି ଘରେ ଅନାଇ ବସିଥିଲାବେଳେ ତୁମେ ଲଗାମଛଡ଼ା ହୋଇ କୁଆଡ଼େ ବୋଲି କୁଆଡ଼େ ବୁଲୁଥିବ ।" ବୈକୁଣ୍ଠ କିଛି ଉତ୍ତର ଦେଲାନାହିଁ । ଅନ୍ୟ ଦୁଇଜଣ ଏକସ୍ୱରରେ କହିଉଠିଲେ, "ସାର୍, ଆମେ ସେଇଭଳି ଗୋଟିଏ କଥାପାଇଁ ଆପଣଙ୍କ ପାଖକୁ ଆସିଥିଲୁ । ବୈକୁଣ୍ଠ ତା class mate ସତ୍ୟଭାମାକୁ ବିବାହ କରିବାକୁ ଚାହୁଁଛି । ଏବଂ ସେଥିରୁ ସେ ଟଳିବାର ନାହିଁ ।" ସତ୍ୟଭାମାକୁ ମୁଁ ଭଲକରି ଚିହ୍ନିଥିଲି । ଅତି ସରଳ, ନିଷ୍କପଟ ତଥା କୋମଳ ସ୍ୱରରେ କଥାବାର୍ତ୍ତା କରୁଥିବା ଝିଅଟିଏ । Ladies hostel ରେ ରହୁଥାଏ । ସମୟ ସମୟରେ ମୋର ଶାଳୀ ସାଙ୍ଗରେ ଆମ ଘରକୁ ଆସେ । ମୋ ସ୍ତ୍ରୀ ତା' ବିଷୟରେ ବହୁତ ପ୍ରଶଂସା କରି ମୋ ମନରେ ଏକ ଭଲ ଧାରଣା ସୃଷ୍ଟି କରି ଦେଇଥାଏ । ମୋ ମତାମତର ଆବଶ୍ୟକତା ନଥିଲେ ମଧ୍ୟ ସେମାନେ ମୋର ମତ ଜାଣିବାକୁ ଚାହିଁଲେ । ବୈକୁଣ୍ଠ ଅତି ସାହସର ପିଲା ହୋଇଥିଲେ ମଧ୍ୟ ସରମରେ ଲାଜେଇ ଯାଇ ତଳକୁ ମୁହଁକରି ଖାଇ ଚାଲିଥାଏ । ମୁଁ ପ୍ରସ୍ତାବର ପକ୍ଷରେ ମତଦେବାରୁ ବୈକୁଣ୍ଠ ବହୁତ ଖୁସି ହୋଇଯାଇ ମୋ ମୁହଁକୁ ଅନାଇଲା । ସେ ଦିନର କଥାଗୁଡ଼ିକ ମୋର ଗୋଟି ଗୋଟି କରି ମନେ ରହିଯାଇଛି ।

ବୈକୁଣ୍ଠର ଅକାଳ ତଥା ଆକସ୍ମିକ ମୃତ୍ୟୁର ଖବର ପାଇ ମୁଁ ତାଙ୍କ ଘରକୁ ଗଲି । ସେଠାରେ ସେଦିନର ତଥା ତା ପୂର୍ବର କଥା ଶୁଣି ଅତ୍ୟନ୍ତ ମର୍ମାହତ ହେଲି । ଅତୀତରେ ମୁଁ ଯେଉଁ ଆଶଙ୍କା କରିଥିଲି ଯେ ସେ ତାର ସ୍ତ୍ରୀକୁ ଠକିଦେଇ ନିରାଶ କରିବ, ସେ କଥା ମୋର ମନେ ପଡ଼ିଗଲା । ଏତେ ବଡ଼ ଦୁର୍ଘଟଣାକୁ ମୁଁ ସ୍ୱପ୍ନରେ ମଧ୍ୟ ଭାବିନଥିଲି । ମୋର ଆଶଙ୍କା ଥିଲା ଯେ ସେ ସାମାଜିକ ତଥା ଲୋକହିତକର କାର୍ଯ୍ୟରେ ବ୍ୟସ୍ତରହି ଘରେ ଥିବା ସ୍ତ୍ରୀକୁ ଯଥେଷ୍ଟ ଦୃଷ୍ଟି ଦେଇପାରିବ ନାହିଁ । ମାତ୍ର ତାହାର ସହସ୍ର ଗୁଣର ଦାରୁଣ ଯନ୍ତ୍ରଣା ଦେଇ ସତ୍ୟଭାମାକୁ ସେ ଠକିଦେଇ ଚାଲିଗଲା ବୋଲି ମୋର ମନେ ହେଲା । ଆଉ ଗୋଟିଏ କଥା ମୋର ମନେ ପଡୁଛି । ରାଉରକେଲାରୁ ଜଣେ ପୋଲିସ ଅଫିସର ବୈକୁଣ୍ଠକୁ arrest କରିବାକୁ ଆସିଥିଲେ । ବୈକୁଣ୍ଠଦ୍ୱାରା ପ୍ରକାଶ ପାଉଥିବା ସାପ୍ତାହିକ ପତ୍ରିକା "ଲୋକାଗ୍ରର" ଛାପାଖାନାରେ ସେ ବୈକୁଣ୍ଠକୁ ଅପେକ୍ଷା କରି ରହିଥିଲେ । ତା ସାଙ୍ଗମାନେ ତାହା ଶୁଣି ତାକୁ arrest ରୁ ରକ୍ଷା କରିବାପାଇଁ ଦୁଇ ଦଳ ହୋଇ ରସୁଲଗଡ଼ ଓ ବାଣୀବିହାର ଛକରେ ଅପେକ୍ଷା କରିଥିଲେ । ରସୁଲଗଡ଼ରୁ ଘରକୁ ଫେରିବା ବାଟରେ ତା ସାଙ୍ଗମାନେ ଘରକୁ ଯିବାପାଇଁ ବୈକୁଣ୍ଠକୁ ବାରଣ କରି ସମସ୍ତ କଥା କହିଲେ । ମାତ୍ର ବୈକୁଣ୍ଠ ସେମାନଙ୍କର ତାଗିଦ୍‌କୁ ଭ୍ରୁକ୍ଷେପ ନକରି ଘରକୁ ଗଲା । ସାଙ୍ଗମାନଙ୍କର ବାରଣ ନମାନି ଆସିଥିବାର କହିଲା ଏବଂ ତାକୁ arrest କରିବାକୁ କହିଲା । ଏଥିରେ ପୋଲିସ ଜଣକ ଆଶ୍ଚର୍ଯ୍ୟ ହୋଇଗଲେ । କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଲୋକକୁ ସେ ଜାଣନ୍ତି କି ବୋଲି ପଚାରିବାରୁ, ବୈକୁଣ୍ଠ ମନା କଲା । ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ସେ ରାଉରକେଲାରୁ ବସ୍‌ରେ ଫେରୁଥିବାର କଥା ପୋଲିସ ବାବୁଙ୍କ ପ୍ରଶ୍ନର ଉତ୍ତରରେ କହିଲା । ସେଇ ବସ୍‌ରେ ଜଣେ ଦାଗୀ ବୈକୁଣ୍ଠ ପଛେ ପଛେ ବସ୍‌ରେ ଚଢ଼ିଥିବାରୁ ତାକୁ ବୈକୁଣ୍ଠର ବନ୍ଧୁ ବୋଲି police ମାନେ ଭାବିଥିଲେ । ତେଣୁ ହାତରେ ହେଣ୍ଡକପ୍ ପକାଇ ରାଉର୍‌କେଲା ନେବାପାଇଁ arrest order ଧରି ଆସିଥିଲେ । ବୈକୁଣ୍ଠ ନିଜେ ତାଙ୍କ ପାଖକୁ ଆସି arrest କରିବାକୁ କହିଥିବାରୁ ସେ ବାବୁ ଜଣକ ଆଶ୍ଚର୍ଯ୍ୟ ହେଲେ ଓ ତାକୁ ବ୍ୟକ୍ତିଗତ ମୁଚଲିକାରେ ଛାଡ଼ିଦେଇଗଲେ ।

ଇଂରାଜୀ ଓ ଓଡ଼ିଆରେ ବକ୍ତୃତା ଦେବାରେ ତାହାର କେହି ସମକକ୍ଷ ନଥିଲେ । କଲେଜ ଇଉନିୟନର ସଭାପତି ଥାଇ ବାର୍ଷିକ ଉତ୍ସବରେ ବୈକୁଣ୍ଠର ଇଂରାଜୀରେ ଭାଷଣ ଶୁଣି ସେତେବେଳର D.P.I. ପରମ ଜ୍ଞାନୀ ତଥା ଇଂରାଜୀର ପ୍ରଫେସର ଶ୍ରୀଯୁକ୍ତ ବିଧୁଭୂଷଣ ଦାସ ତାହାର ଭୂୟସୀ ପ୍ରଶଂସା କରିବାର ମୁଁ ଦେଖିଛି ।

ଓଡ଼ିଶାର ବିଶ୍ୱବିଦ୍ୟାଳୟର ପରୀକ୍ଷାଫଳ ପ୍ରକାଶନରେ ସାଧାରଣତଃ ବହୁତ ବିଳମ୍ବ ହୁଏ । ତେଣୁ Delhi School of Economics ରେ ଏମ୍.ଏ ଶ୍ରେଣୀରେ ନାମ ଲେଖାହେଲା ବେଳକୁ ସମସ୍ତ ବିଷୟରେ ବହୁତ ପଢ଼ାପଢ଼ି ହୋଇଯାଇଥାଏ । ସେଠାରେ ପ୍ରଥମ class ରେ ପାଠ ସମ୍ବନ୍ଧୀୟ ଗୋଟିଏ ପ୍ରଶ୍ନ ପଚାରିବାରୁ ବିଭାଗୀୟ ମୁଖ୍ୟ ଏତେ

ପ୍ରଭାବିତ ହୋଇଗଲେ ଯେ ପଢ଼ାପଢ଼ି ସରିଯାଇଥିବା ବିଷୟ ଗୁଡ଼ିକୁ ଅଧିକ class ନେଇ ବୈକୁଣ୍ଠକୁ ପଢ଼ାଇବାର ବନ୍ଦୋବସ୍ତ କରିଥିଲେ ।

କଲେଜ ୟୁନିଅନର ସଭାପତି ଥିବାରୁ ବହୁ ସମୟରେ ସେ ଶ୍ରେଣୀରେ ଯୋଗ ଦେଇପାରୁ ନଥାଏ । ଯେଉଁଦିନ ସେ ଶ୍ରେଣୀକୁ ଆସେ, ସେଦିନ କଲେଜରେ କିଛି ନା କିଛି ସମସ୍ୟା ସୃଷ୍ଟି ହୁଏ । ପିଲାମାନେ ଝରକା ପାଖରେ ଠିଆ ହୋଇ ବୈକୁଣ୍ଠକୁ ବାହାରକୁ ଯିବାପାଇଁ ଇସାରା ଦିଅନ୍ତି । ମୁଁ ମଧ ବାଧ ହୋଇ ଯିବାକୁ ଅନୁମତି ଦିଏ । ଗଲାବେଳେ କହିଦେଇ ଯାଏ ଯେ ସେ ପଛରେ ଘରକୁ ଆସି ସବୁ ବୁଝିନେବ । ସେ ପରେ ଘରକୁ ଆସେ । ମାତ୍ର ତାକୁ ବୁଝାଇବାରେ ଆଦୌ ଅସୁବିଧା ହୁଏ ନାହିଁ । ପଢ଼ା ଆରମ୍ଭ ହେବା ମାତ୍ରେ ସେ ଆଗକୁ ଆଗକୁ ମାଡ଼ିଚାଲେ, Economics ର କ୍ଲିଷ୍ଟ ଶବ୍ଦର ଅର୍ଥ ତଥା ଭାବଧାରାକୁ ସେ ଅତି ସହଜରେ ବୁଝିଯାଏ । ଏଭଳି ଜଣେ ଛାତ୍ର ମୁଁ ମୋର ଚାକିରୀର ୩୫ ବର୍ଷ ମଧ୍ୟରେ ଦେଖିନାହିଁ । ଏହା ମଧ ବୈକୁଣ୍ଠର ଅନ୍ୟାନ୍ୟ ଶିକ୍ଷକଙ୍କର ମତ ।

କଲେଜରେ ଛାତ୍ରଥିବା ସମୟରେ ଆଞ୍ଚଳିକ ରାଜନୀତିରେ ସେ ପ୍ରତ୍ୟକ୍ଷ ଭାଗ ନେଉଥିଲା । ସରପଞ୍ଚଙ୍କ ଠାରୁ ଆରମ୍ଭ କରି ଏମ୍.ଏଲ୍.ଏ ଓ ଏମ୍.ପି. ପ୍ରାର୍ଥୀମାନଙ୍କ ପକ୍ଷରେ ସଭାସମିତିରେ ଭାଷଣ ଦେବା ତାହାର ଗୋଟିଏ ମୁଖ୍ୟ ଦାୟିତ୍ୱ ଥିଲା । ପ୍ରାର୍ଥୀମାନଙ୍କ ପାଇଁ ଭାଷଣ ଲେଖିବା ଓ ପ୍ରଚାରପତ୍ର ଆଦି ପ୍ରସ୍ତୁତ କରିବାରେ ସେ ସିଦ୍ଧହସ୍ତଥିଲା । ଦୁର୍ନୀତିଗ୍ରସ୍ତ ବୟସ୍କ ରାଜନେତାଙ୍କ ବିରୋଧରେ ଯୁବ ସଚ୍ଚୋଟ୍ ପ୍ରାର୍ଥୀ ଦେଇ ସେମାନଙ୍କୁ ଭୋଟ୍‌ରେ ଜିତାଇବାର କଳା ତାକୁ ଜଣାଥିଲା । ଭୋଟ୍‌ରେ ହାରି ଯାଉଥିବା ନେତାମାନେ ଅମୂଳକ କୁତ୍ସା ରଟନା କରି ତାକୁ ଭୋଟ ପ୍ରଚାରରୁ କ୍ଷାନ୍ତ କରିବା ପାଇଁ ବହୁତ ଚେଷ୍ଟା କରିଥିଲେ ମଧ ସଫଳ ହୋଇ ପାରିନଥିଲେ । ତା'ର ସ୍ୱଚ୍ଛ ଚିନ୍ତାଧାରା ଓ ଭୋଟ ପରିଚାଳନାର ଦକ୍ଷତା ପାଖରେ ସମସ୍ତେ ହାର ମାନିଯାଉଥିଲେ । ସ୍ୱାର୍ଥସର୍ବସ୍ୱ ପରାସ୍ତ ରାଜନେତାମାନଙ୍କର ଅମୂଳକ କୁତ୍ସା ରଟନା ବୈକୁଣ୍ଠ ଜୀବନର ଗତିପଥକୁ ପୂର୍ଣ୍ଣମାତ୍ରାରେ ଓଲଟାଇ ଦେଇଥିଲା ।

ବୈକୁଣ୍ଠର ପ୍ରକୃତ ବୌଦ୍ଧିକ ଦାୟାଦ ରୂପେ ତା'ର ଝିଅ ଚେତନା ଓ ପୁଅ ବାବୁକୁ ଦେଖିଲେ ଏବଂ ସେମାନଙ୍କର ଚାଲିଚଳଣ ଓ କାର୍ଯ୍ୟାବଳୀ ଦେଖିଲେ ମୁଁ ବହୁତ ଆନନ୍ଦିତ ହୁଏ । ସତ୍ୟଭାମାକୁ ହତାଶ ତଥା ନିଆଶ୍ରା କରିଦେଇ ବୈକୁଣ୍ଠ ବହୁ ଦୂରକୁ ସବୁଦିନ ପାଇଁ ଚାଲିଯାଇଥିଲେ ମଧ ଚେତନା ଓ ବାବୁ ପରି ଦୁଇଟି ସମର୍ଥ ଆଶାବାଡ଼ି ଭଳି ଦୁଇକଡ଼ରେ ଠିଆ ହୋଇଥିବାର ଦେଖିଲେ ମୋ ମନକୁ ଗୋଟିଏ ଚିନ୍ତା ଆପେ ଆପେ ଚାଲିଆସେ । ଅଜଣା ଶକ୍ତି କାହିଁକି ବୈକୁଣ୍ଠକୁ ଏତେ ଶୀଘ୍ର ନେଇଗଲେ ମୁଁ ଜାଣିପାରେନା । ମାତ୍ର ଗୋଟିଏ ହାତରେ କିଛି ନେଇ ଅନ୍ୟହାତରେ ତା'ଠାରୁ ଅଧିକ ମୂଲ୍ୟର ପଦାର୍ଥ ଦାନ କରି ଥିବାର ମୁଁ ଅନୁଭବ କରେ । ଏହା ଚିନ୍ତା କରି ମୁଁ ଆତ୍ମବିଭୋର ହୋଇପଡ଼େ ।

ଗୋଟିଏ ବିରାଟ ଥୁଣ୍ଟାଗଛ ତଳେ ଦୁଇଜଣଙ୍କୁ ପଣତ କାନିରେ ଅଶ୍ରୁଳ ନୟନରେ ଆଶ୍ରାଦେଇ ସତ୍ୟଭାମା ଠିଆ ହୋଇଥିବାର ମୁଁ ଦେଖିଛି । ଏବେ ସେଇ ଦୁଇଜଣ ମାଆଙ୍କୁ ଆଶ୍ରା ଦେବାପାଇଁ ପୂର୍ଣ୍ଣ ମାତ୍ରାରେ ସମର୍ଥ ତଥା ସଦା ପ୍ରସ୍ତୁତ । ଭଗବାନ ଗୋଟିଏ ସତ୍ ଆତ୍ମାଙ୍କୁ କୌଣସି ମହତ ଉଦ୍ଦେଶ୍ୟରେ ନେଇଛନ୍ତି ନିଶ୍ଚୟ । ହେଲେ ବି ସତ୍ୟଭାମାର ବର୍ତ୍ତମାନ ଓ ଭବିଷ୍ୟତର ସମସ୍ତ ସମସ୍ୟାର ସମାଧାନର ପନ୍ଥା ହାତ ପାହାନ୍ତାରେ ରଖିଦେଇଛନ୍ତି । ପରିବାରର ସମସ୍ତ ସଦସ୍ୟ କୌଣସି ପ୍ରକାର ମାନସିକ ଉଦ୍‌ବେଗର ସମ୍ମୁଖୀନ ନହୁଅନ୍ତୁ ତଥା ଶାନ୍ତିରେ କାଳାତିପାତ କରନ୍ତୁ, ଏହା ହିଁ ସର୍ବମଙ୍ଗଳମୟ ବିଭୁଙ୍କ ପାଖରେ ମୁଁ ଆକୁଳ ନିବେଦନ କରୁଛି ।

ଅବସର ପ୍ରାପ୍ତ ପ୍ରଫେସର୍
ମହାନଦୀ ବିହାର, କଟକ



# ସ୍ମୃତି କେବେ ମରେ ନାହିଁ

*ପ୍ରସନ୍ନ ପାଢ଼ଶାଣୀ*

କମ୍ରେଡ୍ ବୈକୁଣ୍ଠ,
ତମେ ଆମକୁ ନର୍କରେ ଛାଡ଼ିଦେଇ
କେଡ଼େବେଗି ଚାଲିଗଲ ସ୍ୱର୍ଗକୁ ।
ସ୍ୱର୍ଗର ଅନ୍ୟନାମ ବୈକୁଣ୍ଠ
ବୈକୁଣ୍ଠର ଅନ୍ୟ ନାମ ସ୍ୱର୍ଗ
ଯାହାକୁ ନେଇ ତୁମେ ରଚନା କରିଦେଇ ଚାଲିଗଲ,
ଅନେକ ଆକାଶ, ଅନେକ ବଉଦ
ଯାହା ଭିତରେ ତୁମ ଆଖିର ଲୁହ ଭିଜି ଯାଇଛି,
ଶୂନ୍ୟତାର କାଗଜରେ ତାରାର ଅକ୍ଷର ପଢ଼ି
ଜୀବନର ହିରା ଲଫାପାରେ
ତୁମେ ମୋର ହଜି ଯାଇଥିବା ଠିକଣା,
ଗରିବ ନିରୀହା ଗ୍ରାମ୍ୟ ବଧୂର
ଭଙ୍ଗା ଚାଳ ଭିତରୁ ତୁମକୁ ଦେଖୁଛି,
ଭୁଲିଯାଇ ନାହିଁ ତୁମକୁ

ତୁଳସୀ ଚଉରା ଅଥବା ଅଗଣା
ଧନ ପାଇଁ କେବେ ହୋଇନାହଁ ବାଟବଣା ।

ଆଦର୍ଶର ହେ କ୍ରାନ୍ତିକାରୀ ପୁରୁଷ
କେବେ ହୋଇନାହଁ ଜୀବନ ସଂଗ୍ରାମରେ ହତାଶ
ଡେଇଁ କେତେ ବିଲବାଡ଼ି, ନଈ ଓ ପାହାଡ଼
ପାରି ହୋଇ ଅନେକ ବସନ୍ତ, ବତାସ ଓ ଝଡ଼
ଏବେ ବି ଦେଖେ ପବନରେ
ତୁମରି ନିଃଶ୍ୱାସ ।
ମୋତେ ଜମା ଲାଗୁନାହିଁ ତୁମେ ଆମକୁ ଛାଡ଼ି
କେଉଁଆଡ଼େ ଯାଇଅଛ ଚାଲି
ମୋତେ ଲାଗେ ଠିକ୍ ଗତକାଲି,
ତମେଥିବ ତରାଇ ଜଙ୍ଗଲରେ
ଅଥବା କୋରାପୁଟ ଶ୍ରୀକାକୁଲମରେ
ଆଦର୍ଶର ରକ୍ତ ପତାକା ଧରି ଲୁଚି ରହିଥିବ
କେଉଁ ପାହାଡ଼ ଗୁମ୍ଫାରେ ।।
ସେଇଥିପାଇଁ ଦେଖା ହେଉନାହିଁ
ଆଉ କ'ଣ ତୁମେ କେବେ ଫେରିବ ନାହିଁ ?
ସାଥିହୋଇ ଲେଖିବାନି ଆମେ ଚିର ବନ୍ଦିମାନ
କବିତାର ଫୁଲ
ଫୁଟିବନି ଆକାଶରେ ତାରା ହୋଇ ?
ମାଟିର ବଗିଚାରେ ଆହେ ମୁକ୍ତିର କଢ଼ !
ଯଉବନ ଦୁଲିରେ ନିଆଁର ରଡ଼
ଲିଭିପାରେ ନାହିଁ କେବେ
ଦର୍ଶନର ଅପୂର୍ବ ଆଲୋକ
ଏବେ ବି ଜଳେ ମଶାଣି ଭିତରେ ତମରି ଲେଖା
ସୃଜନିର ଅପୂର୍ବ ଅଙ୍ଗାର
ଯାହାକୁ ଲିଭାଇ ପାରେନାହିଁ ମହାକାଳ ।

ତମେ ଏବେ କେଉଁଠି ଥିବ
ଯଦି ଜାଣି ପାରୁଥାନ୍ତି
ପାଖରେ ପହଞ୍ଚିବାକୁ
ଇଚ୍ଛା ହେଲେ ବି ପହଞ୍ଚିପାରନ୍ତି ନାହିଁ
କବିତା ଶୁଣାଇବାକୁ,
ଲେଖିଲି ଏଇ ହୃଦୟର କବିତା
ତମ ସ୍ନେହ ପ୍ରେମ ମଶାଣିରେ ଜଳୁ ମୋର ଚିତା ।
କେତେ ଯିବେ କେତେ ବା ଆସିବେ
ତୁମେ ଆଉ ଫେରିବନି ଭାବିପାରୁନାହିଁ
ଫୁଲ ଫୁଟେ ପୁଣି ଝରେ
ତମେ କିଆଁ ଫୁଟିବନି
ଆଉଥରେ ଜୀବନର କାନନରେ
ହେ ଅମଳିନ ଫୁଲ !
ତୁମ ଆଦର୍ଶର ସୁଗନ୍ଧିରେ ଭରିଦେଇ ଗଲ—
ଯେତେଦିନ ଯାଏ ପ୍ରଗତିର ସାହିତ୍ୟରେ
ବଞ୍ଚି ରହିଥିବ ତୁମେ ଚିରଦିନ
ମୋ ପ୍ରଣାମ ଘେନ ।
ଲୁହକୁ ସ୍ୟାହି କରି ଢ଼ାଳି ଦେଉଅଛି
ସଂଗ୍ରାମର ଦୁଆତରୁ ଯେତେକେ କବିତା,
ତାହାରି ଭିତରୁ ବାହାରୁଥିବା ଅସଂଖ୍ୟ କବିତା
ହେଉଥାଉ କାହା ମଥାର ସିନ୍ଦୁର
ଆଉ ପାଦର ଅଳତା ।

ତୁମେ ଯେଉଁଠି ଥାଅ ଯଦି ଜାଣି ପାରୁଥାନ୍ତି
ତେବେ ହଠାତ୍ ପହଞ୍ଚଯାଆନ୍ତି
ତମେ ଯାହା ଲେଖୁଥିଲ ସେଇ ଲେଖା ଲେଖିବାକୁ
ଏଠି ଆଉ ମଣିଷ ନାହାନ୍ତି,

ସମସ୍ତେ ଏବେ ଧନର ପଶୁ,
କେଉଁଆଡ଼େ ଚାଲିଗଲ ହେ ସାଥୀ ! ମନର ଦେବତା
ତମ ସ୍ନେହ ପ୍ରେମ ବିପ୍ଳବର ମଶାଣିରେ
ଜଳୁ ମୋର ଚିତା ।

ଲୋକସଭା ସାଂସଦ, ଭୁବନେଶ୍ୱର



# ବିପ୍ଳବୀ ଚେତନାର ଏକ ହତିଆର ହଜିଯାଇଛି

**ରବି ସିଂ**

ଏ କୃତଘ୍ନ ଓଡ଼ିଆ ଜାତି କାହାକୁ ଆନ୍ତରିକ ଭାବେ ମନେରଖିବାର ଇତିହାସ ନାହିଁ । ଯିଏ ମଲା, ସିଏ ଗଲା । ସେଥିପାଇଁ ବୋଧହୁଏ ଆଧୁନିକ ଓଡ଼ିଆ ସାହିତ୍ୟର ଗଦ୍ୟର ଅଭେଦ୍ୟ ଦୁର୍ଗ ବ୍ୟାସ କବି ଫକୀରମୋହନ ନିଜ ଜୀବଦ୍ଦଶାରେ ନିଜର ପ୍ରତିମୂର୍ତ୍ତି ନିଜେ ନିର୍ମାଣ କରି ତାକୁ ସ୍ଥାପିତ କରିଯାଇଥିଲେ । ବିଗତ ଶତାବ୍ଦୀର ଷାଠିଏ ଦଶକରେ କଟକର ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନରେ ଏକ ଅଭିନବ 'ସ୍ୱୟଂ ସମ୍ବର୍ଦ୍ଧନା' ଉତ୍ସବ ଅନୁଷ୍ଠିତ ହୋଇଥିଲା । ସେ ଉତ୍ସବରେ ପରଲୋକଗତ ସାମ୍ବାଦିକ ନଗେନ ବେଉରିଆ, ମୁରାରୀ ମୋହନ ଜେନା, ଜୀବିତ ଥିବା ମୋର ସେତେବେଳର ସାରସ୍ୱତ ସହଯୋଦ୍ଧା ରବିନାରାୟଣ ମହାପାତ୍ର ଏବଂ ମୁଁ ବା ଏ ଅଧମ ରବି ସିଂ ନିଜ ବେକରେ ନିଜେ ଫୁଲମାଳ ପକାଇ ନିଜ ପୁସ୍ତକ ମାନ ବାଣୀପୀଠର ପାହାଚ ଉପରେ ଥୋଇ ନିଜ ପ୍ରତିଭାର ଗୁଣଗାନରେ ମୁଖର ହେଲା ବେଳେ, ଶ୍ରୀରାମଚନ୍ଦ୍ର ଭବନ ଭିତରେ ଦର୍ଶକ ମଣ୍ଡଳୀଙ୍କ ପାଇଁ ସ୍ଥାନାଭାବ ଯୋଗୁଁ ସାମନା ରାସ୍ତାରେ ପ୍ରବଳ ଭିଡ଼ ଗୋଟିଏ ଛୋଟିଆ ବାଲିଯାତ୍ରାର ପ୍ରତୀକକୁ ପ୍ରତିଭାତ କରିଥିଲା । ସେହି ସଭାରେ ମୋର ଅତ୍ୟନ୍ତ ଘନିଷ୍ଠ ହାସ୍ୟ ଲେଖକ ଫତୁରାନନ୍ଦ ଏବଂ ଆଡ଼ଭୋକେଟ ମଧୁସୂଦନ ମହାନ୍ତି – ଏ ଦୁଇ ଜଣ ଯାକ ଆମ ବେକରେ ଘାସ ମାଳ ଓ ଜିଲିପି ମାଳ ପକାଇ ଆମକୁ ସମ୍ବର୍ଦ୍ଧିତ କରିଥିଲେ । ଯେଉଁ ମାନେ ଶ୍ଳେଷକୁ ହୃଦୟଙ୍ଗମ କରିପାରନ୍ତି ନାହିଁ, ସେମାନେ ଆମକୁ ତୁଚ୍ଛ ତାଚ୍ଛଲ୍ୟ କରି 'ପାଗଳ' ଆଖ୍ୟା ଦେଇଥିଲା ବେଳେ ସର୍ବଭାରତୀୟ ସମ୍ବାଦପତ୍ର ମାନଙ୍କରେ ତାହା ଆଖିଦୃଶିଆ ଭାବେ ପ୍ରକାଶିତ ହୋଇଥିଲା । ଘଟଣା ହେଲା, ସାହିତ୍ୟ କୁହ, ରାଜନୀତି କୁହ, ସବୁଥିରେ 'ଲବି' । ଧରାଧରି, ଯୋଗାଡ଼ ଯନ୍ତ୍ର, ଧାଁଧପଡ଼ କରି ନିଜର ଭଡ଼ାଟିଆ ମାନଙ୍କ ଦ୍ୱାରା ଫୁଲମାଳ କିଣାଇ ସଭା ସମିତିରେ ବେକରେ ପକାଇବା ଅପେକ୍ଷା ନିଜେ ନିଜକୁ ସମ୍ବର୍ଦ୍ଧନା କରିବାରେ କ୍ଷତି କ'ଣ ?

ଏବେ ୨୦୦୬ ମସିହାରେ ମୁଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଅଣଓଡ଼ିଆ ନବୀନ ବାବୁଙ୍କୁ ଗୋଟିଏ ଚିଠି ଲେଖି ରାଜଧାନୀର ଏକ ଗୁରୁତ୍ୱପୂର୍ଣ୍ଣ ଯାଗାରେ ଭୁବନେଶ୍ୱରୀ ଗୁଣ୍ଡରେ ଅଧଗୁଣ୍ଠେ ଯାଗା ମାଗିଥିଲି ଏହି କାରଣରୁ ଯେ ମୋ ଜୀବଦ୍ଦଶାରେ ମୋ ନିଜର ପ୍ରତିମୂର୍ତ୍ତି ତିଆରି କରି ତାକୁ ସେହି ଅଧଗୁଣ୍ଠ ଯାଗାରେ ସ୍ଥାପନ କରି ଓଡ଼ିଆ ଜାତି ତଥା ତାର ଅତୀତ ଓ ଅନାଗତ କୁଳାଙ୍ଗାର ସରକାର ମାନଙ୍କୁ ସଲାମ ଠୁକି ଜୀବନ ପାଖରୁ ବିଦାୟ ନେବି । ଏ ଘଟଣାର ସମ୍ବାଦ ଜାତୀୟ ସ୍ତରରେ ଆଲୋଡ଼ନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏହାର ବିଶଦ ବୀବରଣ The Times Of India, ବଙ୍ଗଳାର ପ୍ରସିଦ୍ଧ ଦୈନିକ 'ଆନନ୍ଦ ବଜାର ପତ୍ରିକା', 'ଆଜ୍‌ତକ' ଟିଭି ଚାନେଲ ଓ ଓ.ଟି.ଭି.ର ଓଡ଼ିଆ ଚାନେଲରେ ପ୍ରସାରିତ ହୋଇଥିଲା ।

ଏସବୁ ପୂର୍ବବର୍ତ୍ତୀ ଘଟଣାର ଅବତାରଣାର ମୂଳ ଉଦ୍ଦେଶ୍ୟ ହେଲା ଏ ହତଭାଗ୍ୟ ଜାତି ମେଳରେ ଯେଉଁ ପ୍ରତିଭାବନ୍ତ କବି, ଲେଖକ, ସାମ୍ବାଦିକ, ସମାଜଚିନ୍ତକ ଓ ପ୍ରଗତିଶୀଳ ବୁଦ୍ଧିଜୀବୀମାନେ ଜନ୍ମ ହୋଇଛନ୍ତି/ଥିଲେ, ସେମାନେ ସମ୍ମାନ ବଦଳରେ ଅପମାନିତ ଓ ଅବହେଳିତ ହୋଇ ଜୀବନ ପାଖରୁ ବିଦାୟ ନେଇଛନ୍ତି ପ୍ରାୟ । ମୁଁ ନିକଟରେ ଏକ ଜାତୀୟ ସମ୍ବାଦପତ୍ରକୁ ସାକ୍ଷାତକାର ଦେଇ କହିଥିଲି, "ଆମ୍ଭ ରାଜ୍ୟର ଅଘୋଷିତ ସରକାରୀ ସାଂସ୍କୃତିକ ନୀତି ହେଲା ଜୀଅନ୍ତା କବି, ଲେଖକ, କଳାକାର, ବୁଦ୍ଧିଜୀବି ମାନଙ୍କର ସମାଧି ରଚନା, ଆଉ ମରିଯାଇଥିବା ସେହି ପ୍ରତିଭାବନ୍ତ ଲୋକଙ୍କର ଶ୍ରାଦ୍ଧ ବା ଜୟନ୍ତୀ ପାଳନ ।" ମୋର ଏ ସତ୍ୟକଥନ ଏପରି ତୀବ୍ର ଆଉ ତୀକ୍ଷ୍ଣ ଧାର ଥିଲା ଯେ ସେ ସମ୍ପର୍କରେ ପାଟି ଫିଟାଇବା ପାଇଁ କାୟମୀସ୍ୱାର୍ଥବାଦୀ ଅଡ଼ିବାଚଙ୍କର ସାମାନ୍ୟ ସତ୍ ସାହସ ହୋଇନାହିଁ । ବୈକୁଣ୍ଠ ବିଶ୍ୱାଳ ଯଦିଓ ଜଣେ ବ୍ୟକ୍ତି ବିଶେଷ ମାତ୍ର, ସେ ଥିଲେ ବହୁ ମୁଖୀ ବିପ୍ଳବୀ ପ୍ରତିଭାର ଅଧିକାରୀ । ତାଙ୍କର କଲମ ଯେପରି ଶାଣିତ, ସେପରି ବେସାଲିସ୍ ଏବଂ ନିର୍ମମ । ତାର ପରିଚୟ ତାଙ୍କ ସଂପାଦିତ ଓ ପ୍ରକାଶିତ ସାପ୍ତାହିକ 'ଲୋକାଚାର' ପତ୍ରିକା ଯୋଉମାନେ ପଢ଼ିଥିବେ ଓ ଯାହାଙ୍କ ପାଖରେ ତାହା ଗଚ୍ଛିତ ଥିବ, ସେହିମାନେ କେବଳ ଜାଣିପାରିବେ । ବୈକୁଣ୍ଠ ବିଶ୍ୱାଳ ଥିଲେ ଗୋଟିଏ ସାମାଜିକ ବିପ୍ଳବର ସ୍ଫୁଲିଙ୍ଗ । ସେହି ସ୍ଫୁଲିଙ୍ଗ ଭିତରେ ଥିଲା ଦାବାନଳକୁ ଜନ୍ମ ଦେବାର ଏକ ପ୍ରତିବଦ୍ଧତା । ସେ ପ୍ରତିବଦ୍ଧତା ନ ଥିଲା ବନ୍ଧ୍ୟା; ତା'ର ଥିଲା ଜନସାଧାରଣଙ୍କ ଠାରୁ ଜନସାଧାରଣଙ୍କ ପର୍ଯ୍ୟନ୍ତ (From Masses to Masses) ଗମନାଗମନ । ଯୋଉଟା ବିପ୍ଳବ ଶାସ୍ତ୍ରର ଏକ ମୁଖ୍ୟ ଉପଦେଶ । ବୈକୁଣ୍ଠ ବାବୁଙ୍କ ସହ ମୋର ସମ୍ପର୍କ ତାଙ୍କ ଛାତ୍ରାବସ୍ଥାରୁ । ତାଙ୍କର ବହୁମୁଖୀ ପ୍ରତିଭାରେ ସେ ମୋତେ ବାରମ୍ବାର ଆକୃଷ୍ଟ କରିଛନ୍ତି, ମୋର ନିକଟତର ହୋଇଛନ୍ତି, ଏକାତ୍ମ ହୋଇଛନ୍ତି ମୋର ଦୁଃଖୀ, ବିପ୍ଳବୀ ପରିବାର ସହିତ । ମୋର ପରଲୋକଗତା ବିପ୍ଳବୀଣୀ ସହଧର୍ମିଣୀ ଥିଲା ତାଙ୍କର ଚିର ସ୍ନେହୀ ଭାଉଜ । ସେହି ଅନ୍ତରଙ୍ଗତା ମୋତେ ଆଜି ଆଲୋଡ଼ିତ କରୁଛି ଏ ଲେଖା ଲେଖିବା ପାଇଁ ବୈକୁଣ୍ଠର କନ୍ୟା ଚେତନାକୁ dictation ଦେବାବେଳେ ।

ଓଡ଼ିଶାରେ ଏହା ସର୍ବଜନବିଦିତ ଯେ ମୁଁ ବହୁତ ଜିନିଷ ମନେରଖେ । ମାତ୍ର ବୟସାଧିକ୍ୟ, ରଣକ୍ଳାନ୍ତି, ଦାରୁଣ ନିଃସଙ୍ଗତା, ରୋଗ, ଅସହାୟତା ଯୋଗୁଁ ମୋର ସ୍ମୃତିକୋଷରୁ ବହୁଘଟଣାର ସ୍ମୃତି ଧିରେ ଧିରେ ବିଲୀନ ହୋଇଯିବାକୁ ବସିଛି । ମନେପଡୁଛି, ଭଦ୍ରକ କଲେଜରେ ବୈକୁଣ୍ଠ ଛାତ୍ର ଥିଲାବେଳେ ଏକ ବିପ୍ଳବୀ ପ୍ରଗତିଶୀଳ ଛାତ୍ରଗୋଷ୍ଠୀର ଗଠନ ତାହାରି ଦ୍ୱାରା ସମ୍ଭବ ହୋଇଥିଲା । ଛାତ୍ର ସମସ୍ୟା କି ଅନ୍ୟ କୌଣସି ସମସ୍ୟା ନେଇ ବୈକୁଣ୍ଠ ଯେଉଁ ମଶାଲ ଶୋଭାଯାତ୍ରାର ଆୟୋଜନ କରିଥିଲା, ସେହି ମଶାଲ ଶୋଭାଯାତ୍ରାର ଅଗ୍ରଭାଗରେ ମୁଁ ଥିଲି ଓ ସେ ମଧ ଥିଲା । ସେ ଶୋଭାଯାତ୍ରାର ତାତି ବହୁକାଳ ପର୍ଯ୍ୟନ୍ତ ଗୋଇନ୍ଦା ବିଭାଗର ମନରୁ ଯାଇନଥିଲା । ସେହି ମଶାଲ ଶୋଭାଯାତ୍ରାର ଅନ୍ତିମ ଦିନରେ ବୈକୁଣ୍ଠର ଅଗ୍ନିବର୍ଷୀ ଭାଷଣକୁ ତାଦ୍ୱାରା ଦୀକ୍ଷିତ ସମବେତ ଛାତ୍ର ପିଇଯାଉଥିଲେ କହିଲେ ଚଳେ । ମୁଁ ସେଦିନ ୧ ଘଣ୍ଟା ୪୫ ମିନିଟ୍ ଧରି ସେ ସମାବେଶରେ ଭାଷଣ ଦେଇଥିଲି ।

ସେହି ଭଦ୍ରକ କଲେଜରେ ବୈକୁଣ୍ଠ ପଢୁଥିଲାବେଳେ କଲେଜ କର୍ତ୍ତୃପକ୍ଷଙ୍କ ଦ୍ୱାରା ଯେଉଁ **Inter College debate** ହୋଇଥିଲା, ସେ **debate** ର ବିଚାରକମଣ୍ଡଳୀ ବୋଧହୁଏ ସଭାପତି ଥିଲି ମୁଁ । ବୈକୁଣ୍ଠ ସେଦିନ **debate** ରେ ଭାଗନେଇ ବୋଧହୁଏ ଆନ୍ତର୍ଜାତିକ ବିପ୍ଳବୀ ରଣଧାରା, ଦୁନିଆର ଦଳିତ, ମନ୍ଥିତ ଜନଗଣର ସଂଗ୍ରାମ ଏବଂ ତା'ର ବିଜୟ କିପରି ଇତିହାସରେ ରାତ୍ରିର ଅନ୍ଧକାର ପରି ଅବଧାରିତ, ସେ ସମ୍ପର୍କରେ ବର୍ଣ୍ଣନା, ବର୍ଣ୍ଣନାର ବିନ୍ୟାସ, ଅଗ୍ନିବର୍ଷୀ ଭାଷା, ବିପ୍ଳବୀ କବିତା ମାନଙ୍କର ଉଦ୍ଧୃତିଦ୍ୱାରା, ସମାଜବାଦୀ - ବାସ୍ତବତା (**Socialist realism**) ର ଦର୍ପଣକୁ ଓ ଦର୍ପଣର ପ୍ରତିବିମ୍ବକୁ ସମବେତ ଛାତ୍ର ଏବଂ ବିଚାରକ ମଣ୍ଡଳୀ ଆଗରେ ଉପସ୍ଥାପିତ କରିଥିଲା, ତାହା ଆଜିପର୍ଯ୍ୟନ୍ତ ମୋ ଭିତରେ ଅମ୍ଳାନ ହୋଇ ରହିଛି । ଏହା ହିଁ ହେଉଛି ବୈକୁଣ୍ଠ (ବୈକୁଣ୍ଠ ବୋଲି ମୁଁ ଲେଖୁଛି କାହିଁକି ତା'ର କାରଣ ହେଲା ମୁଁ ଦିନେ କଟକଠାରେ ମୋ ଘରେ ତାକୁ ବୈକୁଣ୍ଠ ବାବୁ ବୋଲି ସମ୍ବୋଧନ କରିବାରୁ ସେ ପାନଖଣ୍ଡେ ପାଟିରେ ପୁରାଇ ମୋ ସ୍ତ୍ରୀକୁ କହିଥିଲା, "ଭାଉଜ, ଭାଇଙ୍କୁ ମନା କରିପାରିବେ ନାହିଁ ମତେ 'ବାବୁ' ଡ଼ାକିବା ?") ଭିତରର ପ୍ରଜ୍ୱଳିତ ଅଗ୍ନିଶିଖା । ଭଦ୍ରକ କଲେଜର **Inter College debate** ରେ ମୁଁ ତାକୁ ସର୍ବୋଚ୍ଚ ମାର୍କ ଦେଇଥିଲି ଆଉ ସେ ହୋଇଥିଲା ପ୍ରଥମ । ଓଡ଼ିଶାର ବହୁସ୍ଥାନ, ସଭାସମିତିକୁ ଅତିଥି ହୋଇ ଯାଇଛୁ । କୋରାପୁଟ ହିନ୍ଦୁସ୍ଥାନ ଏରୋନେଟିକ୍ସର ଓଡ଼ିଶା ଦିବସ ସଭାକୁ କଟକରୁ ମୁଁ ବସଯୋଗେ ଏକୁଟିଆ ଯାଇ ହିନ୍ଦୁସ୍ତାନ ଏରୋନେଟିକ୍ସର ଅତିଥିଶାଳାରେ ପହଞ୍ଚିଲା ବେଳକୁ ବୈକୁଣ୍ଠ ମତେ ଦେଖି ଚିଲପରି ଛୁଟିଆସି କୁଣ୍ଢାଇ ପକାଇଥିଲା । ଭାଷଣ ମଞ୍ଚରେ ଓଡ଼ିଶା ଦିବସର ତାତ୍ପର୍ଯ୍ୟ, ଓଡ଼ିଆ ଭାଷାର ଉତ୍ପତ୍ତି, ତାର ବିକାଶ ପାଇଁ ୧୯୩୬ ପୂର୍ବରୁ ଯେଉଁ ସଂଗ୍ରାମ ଚାଲିଥିଲା, ତାର ଟିକିନିଖି ବିବରଣୀ ଏପରି ସଂକ୍ଷିପ୍ତ ଭାବେ ଉପସ୍ଥାପିତ କରିଥିଲା ଯେ ମୋ ଭଳି ଜଣେ **Mass Speaker** ତାକୁ ସଭାପରେ ବଧେଇ ଜଣାଇବାକୁ ବାଧ୍ୟ ହୋଇଥିଲା । ଭୁବନେଶ୍ୱର ଶିଳ୍ପାଞ୍ଚଳର **D2/8 shed** ରୁ ତା' ସମ୍ପାଦିତ "ଲୋକାଗ୍ରହ"

ପ୍ରକାଶିତ ହେଉଥିଲା ଆଉ ମୁଁ ଯାଇ ବେଳେବେଳେ ରାତ୍ରିଯାପନ ମଧ୍ୟ କରୁଥିଲି । ବେଳେବେଳେ ସେ ନିଜେ "ଲୋକାୟତ" ପାଇଁ କମ୍ପୋଜିଟର ମାନଙ୍କ ଭଳି ଅକ୍ଷର compose କରେ, ଫର୍ମା ବାନ୍ଧେ ଓ ମେସିନକୁ machineman ନଥିଲେ ନିଜେ ଚଳାଏ । ରସୁଲଗଡ଼ ଶିଳ୍ପାଞ୍ଚଳ ପରିସରରେ ଥିବା ଝୁମ୍ପୁଡ଼ି ହୋଟେଲ୍‌ମାନଙ୍କରେ ଆମେ ବହୁବାର ମଧ୍ୟାହ୍ନ ଭୋଜନ କଲାବେଳେ ମୁଁ ତାକୁ କହେ, "ବୈକୁଣ୍ଠ, ଆରେ ମାଛ ଫାଛ ଟିକେ ଖାଅ । Protein ପାଇବ କୋଉଠୁ ? ପାନାହାରୀ ହୋଇ ବଞ୍ଚିବ କେତେଦିନ ?" (ବୈକୁଣ୍ଠ ନିଜେ ବହୁତ ପାନ ଖାଉଥିଲା, ଆଉ ତା' ସହିତ ସିଗାରେଟ ମଧ୍ୟ ।) ମୋ ମୁହଁରୁ 'ପାନାହାରୀ' ଶବ୍ଦ ଶୁଣି ସେ ମୋ ମୁହଁକୁ ଅନାଇ କହିଲା, "ଆପଣ ତ ଓଡ଼ିଆ ଶବ୍ଦର ଅଗାଧ ଭଣ୍ଡାର । ପାନ ଖାଉଥିବା ଲୋକକୁ ପାନାହାରୀ କହିବା ମୁଁ ପ୍ରଥମ କରି ଆପଣଙ୍କଠୁ ଶୁଣୁଛି ।" ମଧ୍ୟାହ୍ନ ଭୋଜନ ସାରିବାପରେ ଉତପ୍ତ ରୌଦ୍ରଦଗ୍ଧ ମଧ୍ୟାହ୍ନରେ ସେ ଯେତେବେଳେ ଶୋଇପଡ଼େ, ତାକୁ ନିଦରୁ ଉଠାଇବା ଏକେବାରେ ଅସମ୍ଭବ ବ୍ୟାପାର । ଅନେକଥର ମୁଁ ଖରାବେଳେ ଯାଇ ତାର ଦେଖା ନପାଇ ଫେରିଆସିଛି ।

ଟିଣଛପର କୋଠରୀଟିରେ ଭିତରୁ କବାଟ ବନ୍ଦକରି ଝାଳରେ ଗାଧୋଇବାର ଅବସ୍ଥାରେ ମଧ୍ୟ ସେ କୁମ୍ଭକର୍ଣ୍ଣ ନିଦ୍ରାରେ ଆଚ୍ଛନ୍ନ । ପୁଣି ଦୁଇଦିନପରେ ତାର ଶୋଇବା ସମୟ ପୂର୍ବରୁ ମୁଁ ତା ପାଖରେ ପହଞ୍ଚି ତାକୁ ପଚାରେ, 'ତମେ କଣ ତ୍ରେତୟା ଯୁଗରେ ରାବଣର ଭାଇ ଥିଲ କି ?" ସେ ପଚାରେ "କୋଉଭାଇ ?" ମୁଁ କହେ, "ଯୋଉ ଭାଇ ଉପରେ ଶଗଡ଼, ବଳଦ, ତତଲା ତେଲ, ଗରମପାଣି ଫୋପାଡ଼ିଲେ ବି ସେ ନିଦରୁ ଉଠେନାହିଁ ।" ବୈକୁଣ୍ଠ ହୋ ହୋ ହୋଇ ହସି ଜଣେ ପ୍ରେସ୍ କର୍ମଚାରୀକୁ ଚା' ଆଣିବା ପାଇଁ ପଠାଏ ।

ବୈକୁଣ୍ଠର ପୁଅ ଝିଅମାନେ ସତରେ ମୋ ପକ୍ଷରେ ଏକ ବିସ୍ମୟ । ସେମାନେ ଏପରି ସ୍ୱାବଲମ୍ବୀ, କର୍ମଠ, ବିଦ୍ୟାର୍ଜନମୁଖୀ ଯେ, ତାହା ମୁଁ ଆଖିରେ ଥରେ ନୁହେଁ ବହୁବାର ଦେଖିଛି । ଓଜନଦାର ଲୌହଦଣ୍ଡ ବ୍ୟବହୃତ ନହୋଇ ଯଦି ପଡ଼ିରହେ ସେଥିରେ ଜଙ୍ଗ ଲାଗିବା ଅନିବାର୍ଯ୍ୟ । ବିପ୍ଳବ ଶାସ୍ତ୍ରର ବିଧାନ ମୁତାବକ Principal Contradiction ଅର୍ଥାତ ମୁଖ୍ୟ ଦ୍ୱନ୍ଦ୍ୱ ଭିତରୁ ଯାହାର ବିଚ୍ୟୁତି ଘଟେ, ସିଏ ସ୍ଥାଣୁ, ଅଥର୍ବ ହୋଇଯିବ, ବିପ୍ଳବୀ ଚୈତନ୍ୟ ହରାଇ ବସିବ । ଯେଉଁ ସମୟର କଥା ମୁଁ କହୁଛି ସେ ସମୟ ଏକ ସାମାଜିକ ଆନ୍ଦୋଳନର ଭଙ୍ଗା ପଡ଼ିବାର ସମୟ । ସେହି ସମୟ ବୈକୁଣ୍ଠକୁ ସ୍ଥାଣୁ, ଏକପ୍ରକାର ନିଷ୍କ୍ରିୟ କରିଦେଇଥିବାର ଦାରୁଣ ଅନୁଭୂତି ମୋର ଅଛି । କ୍ରମେ ସେ ମତେ ଏଡ଼େଇ ଯିବାର ଚେଷ୍ଟା ବହୁତ କରିଛି । ମୁଁ ଦୁଃଖିତ ହେଲେ ମଧ୍ୟ ତା ଉପରୁ ଆସ୍ଥା ହରାଇ ନଥିଲି । ବୈକୁଣ୍ଠର ସହଧର୍ମିଣୀକୁ ଆଜି ପର୍ଯ୍ୟନ୍ତ ମୋ ସାମନାରେ ମୁଁ ଦେଖିନାହିଁ । ସେ ଯେହେତୁ ଭୁବନେଶ୍ୱରଠାରୁ ବହୁଦୂରରେ ଜଣେ ସ୍କୁଲ ଶିକ୍ଷୟିତ୍ରୀ, ସେହେତୁ ପିଲାମାନଙ୍କର ଦାୟିତ୍ୱ ଆସି ପଡ଼ିଥିଲା ବୈକୁଣ୍ଠ ଉପରେ ଯେତିକି ନୁହେଁ, ବଡ଼ଝିଅ ଚେତନା ଉପରେ । ଗୋଟିଏ

ଛୋଟ ଫ୍ରକ୍ ପିନ୍ଧିଥିବା ବୈକୁଣ୍ଠ ଚେହେରାର ଛାଞ୍ଚରେ ଢ଼ଳା ଝିଅ ଚେତନା ଯେ କୌଣସି ଗୃହିଣୀଠାରୁ ଅଧିକ ଦାୟିତ୍ୱବାନ । ଦେଢ଼ବର୍ଷର ସାନ ଭାଇକୁ ସେ ଭାଇ, ଏପରିକି ପୁଅପରି ଲାଳନ ପାଳନ କରିବନ୍ଧୁ ଝଡ଼ଝଞ୍ଜା ପ୍ରତିକୂଳ ପରିସ୍ଥିତି ଭିତରେ ମଣିଷ କରିଛି । ନିଜେ ମଧ୍ୟ ମଣିଷ ହୋଇଛି । ସେ ସବୁର ବିଶଦ ତର୍ଜମାକରି ମୁଁ ଚେତନାର ଆଉ ତା ମା'ର ମନକୁ ଅଧିକ ଭାରାକ୍ରାନ୍ତ କରିବାକୁ ଚାହେଁନା ।

୧୯୮୨ ମସିହାରେ ମୁଁ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହୁଏ । କଟକ କାଠଯୋଡ଼ି କୂଳସ୍ଥ ମୋର ଛୋଟିଆ 'ନିଃସଙ୍ଗନିବାସ' ବାରଣ୍ଡାରେ ପଡ଼ି ରହିଥାଏ । ଦିନେ ଛଡ଼ା ଦିନେ ବୈକୁଣ୍ଠ ମୋ ପାଖରେ ଯାଇ ବସେ ଆଉ ଆଖି ଛଳଛଳ କରି ବାଷ୍ପରୁଦ୍ଧ କଣ୍ଠରେ କିଛି କହିପାରେନା । ମୁଁ ତା ପିଠିରେ ହାତ ବୁଲାଇ କହେ, "ବୈକୁଣ୍ଠ, ବିବ୍ରତ ହୁଅନା । ମୁଁ ରାଜା ନୁହେଁ – ରାଜଦ୍ରୋହୀ । ରାଜଯକ୍ଷ୍ମା ମୋର କେଶାଗ୍ର ସ୍ପର୍ଶ କରିପାରିବନି । ମୁଁ ପୁଣି ପୂର୍ବ ତେଜରେ ତେଜିୟାନ୍ ହୋଇ ତମର ଶିକ୍ଷାଞ୍ଚଳ ଆସ୍ଥାନରେ ଆସି ହାଜର ହେବି । ଆଗରେ ଦୀର୍ଘପଥ, ପଛରେ ରକ୍ତାକ୍ତ ଅତୀତ, ପାଦତଳେ ଯନ୍ତ୍ରଣାକର ବର୍ତ୍ତମାନ । ତମର ଆଖିର ଲୁହ, ଉତ୍ତପ୍ତ ଲାଭା ଭଳି ମୋ ଭିତରର ଯକ୍ଷ୍ମାର ଜୀବାଣୁକୁ ଜାଳିପୋଡ଼ି ଧ୍ୱଂସ କରିଦେବ ।" ବୈକୁଣ୍ଠର ମୋ ପ୍ରତି ମମତ୍ୱ ଓ ଶ୍ରଦ୍ଧାକୁ ମାପିହେବନାହିଁ । ମୁଁ କଟକର ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲକୁ ସ୍ଥାନାନ୍ତରିତ ହେବା ପର୍ଯ୍ୟନ୍ତ ବୈକୁଣ୍ଠ ସହିତ ତାର 'ଭାରତ-ଚୀନ ମୈତ୍ରୀସଂଘ'ର କର୍ତ୍ତା ବନ୍ଧୁ ନବକିଶୋର ଦାସ ମୋ ପାଖକୁ କ୍ରମାଗତ ଯା' ଆସ କରୁଥିଲେ ଓ ମୋର ଖବର ଅନ୍ତର ବୁଝୁଥିଲେ । ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ । ସେ ମୋର ଏଯାବତ୍ ୫୮ ବର୍ଷର ସାରସ୍ୱତ ଆତ୍ମାର ଆତ୍ମୀୟ । ବନ୍ଧୁ ନବକିଶୋର ଦାସଙ୍କ ଜରିଆରେ ସେ ମୋର ଅବସ୍ଥା ବୁଝି କଟକ ଶ୍ରୀରାମ ଚନ୍ଦ୍ର ଭଞ୍ଜ ମେଡ଼ିକାଲ ପରିସରରେ ଥିବା 'କନିକା କଟେଜ' କୁ ମୋର ଚିକିତ୍ସା ଲାଗି ପ୍ରଦାନ କରିବା ଲାଗି ଆଦେଶ ଦେବା ସଙ୍ଗେ ସଙ୍ଗେ ମୋ ଚିକିତ୍ସାର ସମ୍ପୂର୍ଣ୍ଣ ବ୍ୟୟ ବହନ କରିଥିଲେ ଆଉ ମୋ ଚିକିତ୍ସା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ସରକାରୀ ସ୍ତରରୁ କରିଥିଲେ ।

୧୯୮୬ ମସିହା ପୂର୍ବରୁ ମତେ ହତ୍ୟା କରିବା ପାଇଁ ପୁଲିସ ପ୍ରରୋଚନାରେ ତିନିଥର ରକ୍ତାକ୍ତ ଆକ୍ରମଣ ହୋଇଥିଲା । ୧୯୮୬ ମସିହାର ଆକ୍ରମଣ ଥିଲା ଶେଷ ଆକ୍ରମଣ । ସେଥିପାଇଁ ମାନ୍ୟବର ସୁପ୍ରିମ୍ କୋର୍ଟ ମୋର ନିରାପତ୍ତା ପାଇଁ ୧୯୮୬ ରୁ ୧୯୯୨ ମସିହା ପର୍ଯ୍ୟନ୍ତ ମୋ ଘର ପାଖରେ ଏପିଆର ଫୋର୍ସ କେବଳ ମୁତୟନ କରିନଥିଲେ, ମୋର ଜଣେ ସ୍ୱତନ୍ତ୍ର ସଶସ୍ତ୍ର ଦେହରକ୍ଷୀ ମଧ୍ୟ ନିଯୁକ୍ତ ଥିଲା । ସେହି ଅନ୍ତିମ ରକ୍ତାକ୍ତ ଆକ୍ରମଣରେ ମୁଁ ହରାଇ ବସିଥିଲି ମୋର ଡାହାଣ ଆଖି । ସେ ସମ୍ପର୍କରେ ଅଧିକ ଏଠାରେ ଲେଖିବା ନିଷ୍ପ୍ରୟୋଜନ । ଡାକ୍ତରଖାନାରେ ଚିକିତ୍ସାଧୀନ ଥିବାବେଳେ ବୈକୁଣ୍ଠ ବାରମ୍ବାର ମୋ ପାଖକୁ ଆସେ । ଆଲୋଚନାରେ ଆମେ ଏକ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଥିଲୁ ଓଡ଼ିଶାରେ ପ୍ରଗତିଶୀଳ କବି ଲେଖକଙ୍କର ଏକ ଅନୁଷ୍ଠାନ ଗଠନ ହେବା ଏକାନ୍ତ ଜରୁରୀ ।

ସେଥିପାଇଁ ପୂର୍ବରୁ ମହାକବି ଶ୍ରୀ ବଙ୍ଗନାର, ବହୁ ବିପ୍ଳବୀ କବି ଓ ଲେଖକ ମତେ ଅନୁରୋଧ କରିଥିଲେ ଯେ, ମୋ ନେତୃତ୍ୱରେ ଏକ ସାରସ୍ୱତ ବିପ୍ଳବୀ ସଂଗଠନ ଅବିଳମ୍ବେ ଗଠନ ହେବା ଉଚିତ୍ । ତାର ଦାୟିତ୍ୱ ମୁଁ ବୈକୁଣ୍ଠ ଉପରେ ନ୍ୟସ୍ତ କରିଥିଲି । ଯାହାର ଫଳଶ୍ରୁତି ହୋଇଥିଲା 'ଓଡ଼ିଶା ପ୍ରଗତିଶୀଳ ଶିଳ୍ପୀ, ଲେଖକ, କଳାକାର ସଂଘ' । ମୁଁ ଚିକିତ୍ସାଧୀନ ଥିବା ଅବସ୍ଥାରେ ଡାକ୍ତରଙ୍କ ଅନୁମତି ନେଇ ଭୁବନେଶ୍ୱର ଆସି ସେ ସଂସ୍ଥାର ଉଦ୍‌ଘାଟନ କରଥିଲି । ବୈକୁଣ୍ଠ ଥିଲାତାର ମୁଖ୍ୟ କାଣ୍ଡାରୀ । ପରବର୍ତ୍ତୀ କାଳରେ ଅନେକ ସୁବିଧାବାଦୀ ପ୍ରତିକ୍ରିୟାଶୀଳ ଲୋକଙ୍କ ଯୋଗୁଁ ସେ ଅନୁଷ୍ଠାନଟି ଭାଙ୍ଗି ଯାଇଥିଲା ।

ଆହୁରି ବହୁ ଘଟଣା ଓ ଘନଘଟା ରହିଛି । ୧୯୯୭ ମସିହା ଅକ୍ଟୋବର ୨ ତାରିଖ ଦିନ ମୁଁ ଚିରକାଳ ଲାଗି କଟକ ଛାଡ଼ି ଭୁବନେଶ୍ୱରରେ ବସବାସ କରିବାକୁ ଆରମ୍ଭ କରିଥିଲି । ଆଉ ତା ପରେ ମତେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଉପସଭାପତି ପଦରେ ଅବସ୍ଥାପିତ କରାଯାଇଥିଲା । ମାତ୍ର ସେତେବେଳକୁ ବୈକୁଣ୍ଠ ଶିଳ୍ପାଞ୍ଚଳରୁ ବିଦାୟ ନେଇ ଟଙ୍କପାଣି ରୋଡ଼୍‌କୁ ତାର ଆସ୍ଥାନ ଉଠାଇନେଇଥିଲା । ସେହି ୧୯୯୭ ମସିହାରେ ମୁଁ ଦିନେ ମୋର ସ୍କୁଟିନେଇ ୮ ନମ୍ବର ୟୁନିଟ୍‌କୁ ଗଲାବେଳେ କାହାର ଜଣେ ମଟର ସାଇକେଲ ପଛରେ ବସି ବୈକୁଣ୍ଠ ଯାଉଥିଲା । ସେ ବୋଧହୁଏ ମତେ ଚିହ୍ନିପାରି ନଥିଲା ମୋର ସ୍ୱାସ୍ଥ୍ୟାବସ୍ଥା ଯୋଗୁଁ । କିନ୍ତୁ ବାରମ୍ବାର ପଛକୁ ବୁଲି ମତେ ଅନାଇଥିଲା । ତାହାହିଁ ଥିଲା ତା ସହ ମୋର ଶେଷ ନୀରବ ସାକ୍ଷାତ ।

ହଠାତ୍ ଦିନେ ସମ୍ବାଦପତ୍ରରୁ ପଢ଼ିଲି ଅଂଶୁଘାତରେ ବୈକୁଣ୍ଠ ଆଉ ମୋ ହୃଦୟର ପାଖାପାଖି ହୋଇନାହିଁ ।

ହାତରୁ କାଗଜ ଖସିପଡ଼ିଥିଲା । ଦୃଷ୍ଟିଶକ୍ତି ଜନିତ କାରଣ ଯୋଗୁଁ ଟଙ୍କପାଣି ରୋଡ଼୍‌କୁ ମୁଁ ଯାଇ ପାରିନଥିଲି । ତାର ବାସସ୍ଥାନ ମଧ୍ୟ ଆଜିପର୍ଯ୍ୟନ୍ତ ମୁଁ ଦେଖିନାହିଁ । ପିଲାମାନେ କେଉଁଠିଅଛନ୍ତି, ତା ସ୍ତ୍ରୀ କେମିତି ଅଛି, ଏହି ଗଭୀର ଆତ୍ମଭାବ ମତେ ଏକପ୍ରକାର ଦୋହଲାଇ ଦେଇଥିଲା । ମୃତ୍ୟୁ – ବସ୍ତୁର ଏକ ରୂପାନ୍ତର । ସେଥିରେ ଯଦିଓ ଦୁଃଖ କରିବାର କିଛିନାହିଁ । ତଥାପି କଅଁଳଚମଡ଼ିଆ ମଣିଷ ପକ୍ଷରେ ସାମୟିକ ଧକ୍କା ଲାଗେ । ଆଉ ଏକ ବୈକୁଣ୍ଠ ବିଶ୍ୱାଳକୁ ଓଡ଼ିଶା ଜନ୍ମଦେଇ ପାରିବନାହିଁ ।

ମୁଁ ଆତ୍ମା/ପରମାତ୍ମାରେ ବିଶ୍ୱାସ କରେ ନାହିଁ । ମୋ ପାଖରେ ସ୍ମୃତି ହେଉଛି ଅତ୍ୟନ୍ତ ମୂଲ୍ୟବାନ । ବୈକୁଣ୍ଠ ମୋ ପାଖରେ ଏକ ବିପ୍ଳବୀ ସ୍ମୃତି । ତାର ସ୍ମୃତିକୁ ଅମ୍ଳାନ, ଦେଦୀପ୍ୟମାନ କରିବାପାଇଁ ତାର କନ୍ୟା ଚେତନା ଓ ତାର ସ୍ୱାମୀ, ପୁତ୍ର ଚିନ୍ମୟ ଏବଂ ତାର ମା' ଏମାନେ ଯଦି କିଛି ଉଦ୍ୟମ କରନ୍ତି, ମୁଁ ସେଥିରେ ସବୁଠାରୁ ଆନନ୍ଦିତ ହେବି ।

ଡି ୫/୧, ୟୁନିଟ୍-୬ ଫ୍ଲାଟ୍
ଭୁବନେଶ୍ୱର

❖



# ମର୍ତ୍ତ୍ୟ ବୈକୁଣ୍ଠ

**ଶୈଳଜ ରବି**

ବୈକୁଣ୍ଠ ବାବୁଙ୍କ ପ୍ରତିଭା, ପ୍ରଗତିଶୀଳ ଚିନ୍ତାଧାରା ଏବଂ ସାମାଜିକ ଅଙ୍ଗୀକାର ବିଷୟରେ ତାଙ୍କୁ ଦେଖିବା ପୂର୍ବରୁ ତାଙ୍କର ଏକଦା ଆଦର୍ଶ, **Friend-philosopher-guide,** ଅତୀତରେ ବିଖ୍ୟାତ 'ନକ୍ସଲପନ୍ଥୀ' ବନ୍ଧୁ ରବିଦାସଙ୍କ ଠାରୁ ଶୁଣିଥିଲି । ସେ ଦିଲ୍ଲୀରେ ପାଠ ପଢୁଥିବା ବେଳେ ଦୁଇଥର ରବିବାବୁଙ୍କ ସହିତ ମୋ ଘରକୁ ଆସିଥିଲେ । ବୋଧହୁଏ ମୋର ତାଙ୍କ ସହିତ ସେତିକି ଦେଖା । ଅଳ୍ପ କଥାବାର୍ତ୍ତା ଭିତରେ ତାଙ୍କର ପ୍ରଜ୍ଞା, ବିଶ୍ଳେଷଣ ଶକ୍ତି ଏବଂ ବୈପ୍ଳବିକ ଚିନ୍ତାଧାରା ସହିତ ପରିଚିତ ହୋଇଥିଲି । ସତ୍ୟଭାମା ସହିତ ତାଙ୍କର ବିବାହ ପାଇଁ ପ୍ରସ୍ତୁତି ଚାଲିଥାଏ । ବୋଧହୁଏ ଉଭୟ ପରିବାର ତରଫରୁ ଏହାର ବିରୋଧ କରାଯାଉଥାଏ । କଟକ ପିଲଗ୍ରୀମ୍ ରୋଡ୍‌ରେ ମୋର ଗୋଟାଏ ଘର ଖାଲି ପଡ଼ିଥାଏ । ସେଇଠାରେ ବିବାହ ଉତ୍ସବ ଅନୁଷ୍ଠିତ ହେଉ ବୋଲି ରବିବାବୁ ପ୍ରସ୍ତାବ ଦେଲେ । ମୁଁ ଖୁସିରେ ରାଜି ହୋଇଗଲି । ଏହା ବୋଧହୁଏ ଜରୁରୀ ପରିସ୍ଥିତି ସମୟର କଥା । ବୋଧହୁଏ ମୁଁ ଜରୁରୀ ପରିସ୍ଥିତି ବେଳେ ଜେଲ୍ ଚାଲିଯିବାରୁ ସେ ବିବାହ ଅନ୍ୟତ୍ର ଅନୁଷ୍ଠିତ ହେଲା । ବୈକୁଣ୍ଠ ବାବୁଙ୍କ ସହିତ ସମ୍ପର୍କର ମୋର ଏତିକି ସ୍ମୃତି ।

ତାପରେ ଶୁଣିଲି ସେ ଭୁବନେଶ୍ୱରରେ ବସବାସ କଲେ । ଟ୍ରାକ୍ ଚେଞ୍ଜ କଲେ । ତାଙ୍କ ସହିତ ମୋର ଆଉ ଦେଖା ହୋଇନାହିଁ । ତାଙ୍କ ଭଳି ଏକ ବିରଳ ପ୍ରତିଭା ଅକାଳରେ ଲିଭିଯିବା ଖବର ପାଇ ଖୁବ୍ ବ୍ୟଥିତ ହୋଇଥିଲି ।

ମାତ୍ର ତାଙ୍କ ବିୟୋଗର କିଛି କାଳ ପରେ ହଠାତ୍ ଏକ ମଧୁର ବିସ୍ମୟ :ଜାଣିବାକୁ ପାଇଲି ଯେ ବୈକୁଣ୍ଠ ବାବୁଙ୍କ ଝିଅ ସହିତ ଅନୀଲ୍ ବାବୁଙ୍କ ବିବାହ ହେବାକୁ ଯାଉଛି । ଭାରି ଖୁସି ଲାଗିଲା । ଅନୀଲ୍‌ବାବୁଙ୍କ ଠାରେ ଶ୍ୱଶୁରଙ୍କ ସବୁ ବିରଳ ଗୁଣ ମହଜୁଦ୍ ଅଛି – ଠିକ୍ ତାଙ୍କରି ଭଳି ଚିନ୍ତାରେ ପ୍ରଗତିଶୀଳ, କାର୍ଯ୍ୟ କ୍ଷେତ୍ରରେ ସାମାଜିକ ନ୍ୟାୟ ପାଇଁ ପ୍ରତିବଦ୍ଧ, ଠିକ୍ ତାଙ୍କରି ପରି ସ୍ନେହୀ ଓ ପରୋପକାରୀ । ଜିନିୟସ୍ ମାନଙ୍କର କିଛି ସ୍କ୍ରୁ ଢିଲା ଥାଏ । ବୈକୁଣ୍ଠ ବାବୁ ସେହିପରି ଜଣେ 'ସ୍କ୍ରୁ ଢିଲା' ବ୍ୟକ୍ତି ଥିଲେ । ଅନୀଲ୍ ବାବୁ ସୌଭାଗ୍ୟବଶତଃ ସେ ଦିଗରୁ ନିଖୁଣ ।

ବିପଦ ଶଙ୍କୁଳ ଘାଟି ରାସ୍ତାର ଧାରେ ଧାରେ ଚାଲିଥିବ 'ଗିରି ଶିଖେ ଲକ୍ଷ୍ୟ ରଖି' । ରାସ୍ତାର ଶେଷ ଏକ ଶ୍ୟାମଳ ଛାୟାଛନ୍ନ ଅଧିତ୍ୟକା । ଏହାହିଁ ମର୍ତ୍ତ୍ୟ ବୈକୁଣ୍ଠ । ଏହିଭଳି ଅସୁରକ୍ଷିତ ବିପଦ୍‌ଜନକ ଡ୍ରାଇଭିଂ ରେ ବିଶ୍ୱାସ କରୁଥିଲେ ବୈକୁଣ୍ଠବାବୁ । ଆଉ ଏକ ଦୃଷ୍ଟିରୁ ଏହିଭଳି ଜୀବନକୁ ସାହସର ସହିତ ସାମ୍ନା କରିଛନ୍ତି ତାଙ୍କର ଚିର ସହଯାତ୍ରୀ ସତ୍ୟଭାମା ।

ଗିରି ଶିଖରରେ ନିଜ ଗାଡ଼ିକୁ ପହଞ୍ଚାଇବାର ବିରଳ ଶକ୍ତି ଯେପରି ଜିନିୟସ୍ ମାନଙ୍କର ଥାଏ, ଅକାଳରେ ସେ ଗାଡ଼ି ଓଲଟି ରସାତଳରେ ପଡ଼ିବାର ମଧ୍ୟ ସେହିପରି ଆଶଙ୍କା ସବୁବେଳେ ଥାଏ । ସୁଦକ୍ଷା ସହଯାତ୍ରୀ ସତ୍ୟଭାମା କିନ୍ତୁ ସେଭଳି ନିଶ୍ଚିତ ଦୁର୍ଘଟଣାମାନଙ୍କରୁ ଗାଡ଼ିକୁ ବାରମ୍ବାର ରକ୍ଷା କରିଛନ୍ତି । କେବଳ ସେତିକି ନୁହେଁ, ତାକୁ ନିଜେ ଡ୍ରାଇଭ୍ କରି ସମ୍ପୂର୍ଣ୍ଣ ରାସ୍ତା ମଝିକୁ ନେଇ ଆସିଛନ୍ତି । ନିଜ ପରିବାରକୁ ଏକ ମର୍ତ୍ତ୍ୟ ବୈକୁଣ୍ଠରେ ପରିଣତ କରି ପାରିଛନ୍ତି । ବୈକୁଣ୍ଠ ବାବୁଙ୍କ ସ୍ମୃତି ରକ୍ଷା ଦିଗରେ ତାଙ୍କର କାର୍ଯ୍ୟ ଯେପରି ଚିର ସ୍ମରଣୀୟ, ସବୁ ସମାଜସେବୀଙ୍କ ପରିବାର ପାଇଁ ସେ ଏକ ପ୍ରେରଣାଦାୟୀ ଆଦର୍ଶ ହୋଇ ରହିଛନ୍ତି ।

ବନମାଳି ଭବନ, ଖାନ୍ ନଗର
କଟକ - ୨



# ବୈକୁଣ୍ଠ – ଏକ ବିପ୍ଳବୀ ପ୍ରତିଭାର ଅକାଳରେ ବିଲୟ

***ଗୟାଧର ରାଉତ***

ବୈକୁଣ୍ଠର ଝିଅ ଚେ଼ତନା ଅନୁରୋଧ କରିଛି ଏକ ଲେଖାପାଇଁ । ବୈକୁଣ୍ଠ ସମ୍ପର୍କରେ କ'ଣ ଲେଖିବି, କେଉଁଠୁ ଆରମ୍ଭ କରିବି କିଛି ଠିକ୍ କରି ପାରୁନି । ଏଣୁ ଡେରି ହୋଇଗଲା ଲେଖାଦେବାରେ । ବୈକୁଣ୍ଠ ମୋର ଦୂର ସମ୍ପର୍କୀୟ ଜଣେ ସାନଭାଇ । ପିଲାଟି ଦିନରୁ ତାକୁ ଖୁବ୍ ନିକଟରୁ ଦେଖିଛି । ସ୍କୁଲ ଜୀବନରୁ ତାର ପ୍ରତିଭାର ଆଭାସ ମିଳୁଥିଲା । ସାହିତ୍ୟ ପ୍ରତି ତା'ର ଆଗ୍ରହ ପ୍ରକାଶ ପାଇଥିଲା । କେବଳ ସାହିତ୍ୟ ନୁହେଁ, ସ୍କୁଲରେ ବକ୍ତୃତା ପ୍ରତିଯୋଗିତାରେ ଭାଗନେଇ ଶ୍ରେଷ୍ଠତ୍ୱ ପ୍ରତିପାଦିତ କରିପାରୁଥିଲା । କଲେଜ ଜୀବନରେ ଉତ୍କଳ ବିଶ୍ୱବିଦ୍ୟାଳୟର ବକ୍ତୃତା ପ୍ରତିଯୋଗିତାରେ ପ୍ରଥମ ହୋଇ ଚ୍ୟାନ୍‌ସେଲରଙ୍କର ଗୋଲ୍‌ଡ ମେଡାଲ ହାସଲ କରିପାରିଥିଲା । ସ୍କୁଲ୍ ଜୀବନରୁ ସାହିତ୍ୟ ଅନୁଷ୍ଠାନ ମାନଙ୍କରେ ଭାଗନେଇ ସାହିତ୍ୟ ସାଧନାରେ ବ୍ରତୀ ହୋଇଥିଲା ।

ଆମର ପୂଜ୍ୟ ଶିକ୍ଷକ ୰ଶିଶିର କୁମାର ମଜୁମ୍‌ଦାର ଓ ଶ୍ରୀ ନୃସିଂହଚରଣ ଦାସଙ୍କ ଆଦର୍ଶ, ଆମ୍ଭମାନଙ୍କୁ ସାମାଜିକ କୁସଂସ୍କାର, ଜାତିପ୍ରଥା, ଯୌତୁକ, ଅର୍ଥନୈତିକ ଅସମତା ବିରୁଦ୍ଧରେ ଓ ସାମ୍ୟବାଦ ରାଜନୈତିକ ଚିନ୍ତାଧାରା ସହିତ ସଚେତନ କରାଇଥିଲେ । ଆମେ କେତେଜଣ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ସମାଜରେ କିଛି ପରିବର୍ତ୍ତନ ଆଣିବାକୁ ନିଜକୁ ପ୍ରସ୍ତୁତ କରୁଥିଲୁ । ପରବର୍ତ୍ତୀ କାଳରେ ତଳ କ୍ଲାସ୍‌ରେ ପଢୁଥିବା ବୈକୁଣ୍ଠ, ଶରତ, ଅନ୍ତର୍ଯ୍ୟାମୀ, ଦିବାକର, ପ୍ରଫୁଲ୍ଲ ପ୍ରଭୃତି ମୋ ପରି ଅନ୍ୟ କେତେକଙ୍କ ସମ୍ପର୍କରେ ଆସି, ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ସାମାଜିକ ପରିବର୍ତ୍ତନ ପାଇଁ ଆଗେଇ ଆସିଥିଲେ ।

ବିଶେଷଭାବରେ ଯୌତୁକ ବିରୁଦ୍ଧରେ, ଜାତିପ୍ରଥା ବିରୁଦ୍ଧରେ, ପାଲିଙ୍କିରେ ନଯାଇ ଚାଲିକରି ଯାଇ ବିବାହ କରିବା ଏବଂ ସାମ୍ୟବାଦୀ ଚିନ୍ତାଧାରାରେ ନିଜକୁ ଅନୁପ୍ରାଣିତ କରିଥିଲେ ।

ବୈକୁଣ୍ଠ ସାମ୍ୟବାଦୀ ଚିନ୍ତାଧାରାରେ ଛାତ୍ର ଜୀବନରୁ ନିଜକୁ ପ୍ରସ୍ତୁତ କରିବାକୁ ଆଗେଇ ଆସିଥିଲା । ଅର୍ଥନୈତିକ ଶ୍ରେଣୀ ସଚ୍ଚେତନତା ସମ୍ପର୍କରେ ସଚେତନ ଥିଲା । ବିଶେଷଭାବରେ ଭଦ୍ରକ କଲେଜରେ ପଢ଼ିବାବେଳେ ଛାତ୍ର ଫେଡେରେସନ୍‌ରେ ସକ୍ରିୟ ସଭ୍ୟ ହେବା ସଙ୍ଗେ ସଙ୍ଗେ ସାମ୍ୟବାଦ ଚିନ୍ତାଧାରା ସହିତ ଅଧିକ ଜ୍ଞାନ ଆହରଣ କରିବାର ସୁଯୋଗ ମିଳିଥିଲା । ସେ ସୁଯୋଗର ସଦ୍‌ବ୍ୟବହାର କରି ଭବିଷ୍ୟତରେ ଜଣେ ସାମ୍ୟବାଦୀ ସଚ୍ଚେତନ ନାଗରିକ ଭାବରେ ନିଜକୁ ପ୍ରତିଷ୍ଠା କରିବାକୁ ଲାଗିଲା । ବିଶେଷ ଭାବରେ ତତ୍‌କାଳୀନ ସାମ୍ୟବାଦୀ ନେତା ଚାରୁ ମଜୁମ୍‌ଦାର ଓ ତାଙ୍କର ସହକର୍ମୀ ମାନଙ୍କର ନକ୍ସଲ୍‌ପନ୍ଥୀ ଆନ୍ଦୋଳନ ଚିନ୍ତାଧାରା ସହିତ ସଚ୍ଚେତନ ଥିଲା । ଓଡ଼ିଶାର ନକ୍ସଲ୍‌ପନ୍ଥୀ ଆନ୍ଦୋଳନର ନେତା ଶ୍ରୀ ଗଣନାଥ ପାତ୍ର, ଶ୍ରୀ ରବି ଦାସ୍ ଓ ୰ନାଗଭୂଷଣ ପଟ୍ଟନାୟକଙ୍କ ଆଦର୍ଶରେ ସଚ୍ଚେତନ ଥିଲା, କିନ୍ତୁ ଶ୍ରୀ ଗଣନାଥ ପାତ୍ର ଓ ଶ୍ରୀ ରବି ଦାସଙ୍କ ମଧ୍ୟରେ ଆଦର୍ଶଗତ ବିଭେଦ ଯୋଗୁଁ ଓଡ଼ିଶାରେ ନକ୍ସାଲାଇଟ୍ ଆନ୍ଦୋଳନରେ ବାଧା ସୃଷ୍ଟି ହେଲା । ମୋ ପରି କେତେକ କମରେଡ଼ ୰ନାଗଭୂଷଣ ପଟ୍ଟନାୟକ ଓ ଗଣନାଥ ପାତ୍ରଙ୍କୁ ସମର୍ଥନ କରିବାରୁ ସାମ୍ୟବାଦୀ ଆଦର୍ଶ ଚ୍ୟୁତ ଶ୍ରୀ ରବିଦାସ୍ ମୋ ବିରୁଦ୍ଧରେ କହି, ବୈକୁଣ୍ଠ, ଶରତ ପ୍ରଭୃତିଙ୍କୁ ମୋ ଠାରୁ ରାଜନୈତିକ ଆଦର୍ଶଗତ ଭାବରେ ଅଲଗା କରିବାକୁ ସଫଳ ହେଲେ । ଏହାହିଁ ମୋର ଦୁଃଖ । ଅବଶ୍ୟ ଏକଥା ମୁଁ ବହୁଦିନପରେ ଜାଣିଲି କାରଣ ବୈକୁଣ୍ଠ, ଶରତ ପ୍ରଭୃତି ମୋ ସହିତ ପରେ ସାମାଜିକ ସମ୍ପର୍କ ରଖିବାରୁ ମୁଁ ଡେରିରେ ଜାଣିଲି । ଅବଶ୍ୟ ଗଣନାଥ ପାତ୍ର ମୋତେ ଆଗରୁ ସୂଚନା ଦେଇଥିଲେ । ଏଣୁ ବୈକୁଣ୍ଠ, ଶରତ ଓ ଅନ୍ୟମାନେ ତଥାକଥିତ ସାମ୍ୟବାଦୀ ଶ୍ରୀ ରବିଦାସଙ୍କ ପରି କ୍ରାନ୍ତିକାରୀ ନକ୍ସାଲାଇଟ ଆନ୍ଦୋଳନର ଚିନ୍ତାଧାରାରୁ ଦୂରେଇ ଗଲେ । ଏହା ଏକ ବିରାଟ ବିଫଳତା । ଯାହା ଫଳରେ ବୈକୁଣ୍ଠ କ୍ରାନ୍ତିକାରୀ ବିପ୍ଳବୀ ହେବା ପରିବର୍ତ୍ତେ କେବଳ ଜଣେ ସାମ୍ୟବାଦୀ ଚିନ୍ତାର ପ୍ରଚାରକ ରୂପେ ପ୍ରତିଷ୍ଠିତ କରିବାକୁ ଓ କଲମ ମୁନରେ ବିପ୍ଳବ କରିବାକୁ ଆଗେଇ ଆସିଲା । ଯାହା ଫଳରେ କେତେକ ବନ୍ଧୁଙ୍କର ଆର୍ଥିକ ସହାୟତାରେ (ବିଶେଷଭାବରେ ୰କୃପାସିନ୍ଧୁ ଜେନାଙ୍କର ଆର୍ଥିକ ସାହାଯ୍ୟରେ) "ଲୋକାଗ୍ନର" ପରି ଏକ ସାମ୍ୟବାଦୀ ପତ୍ରିକା ପ୍ରକାଶ କରିବାକୁ ସେ ସକ୍ଷମ ହେଲା । ମୁଁ ସେତେବେଳେ ପରାମର୍ଶ ଦେଇଥିଲି ଯେ ଆର୍ଥିକ ସ୍ୱଚ୍ଛଳତା ନ ରହିଲେ, ଓଡ଼ିଶାରେ ସଚ୍ଚେତନ ନାଗରିକ ଅଭାବ ଥିବାବେଳେ ଏକ ପ୍ରଗତିଶୀଳ ପତ୍ରିକା ତିଷ୍ଠି ପାରିବ ନାହିଁ । ଅବଶ୍ୟ ଯେଉଁ କେତେକ ପ୍ରକାଶ ପାଇଥିଲା ତାହା ଅତି ଉଚ୍ଚକୋଟୀର ଥିଲା । ସମାଜରେ ସଚେତନ ନାଗରିକମାନଙ୍କୁ ଆକୃଷ୍ଟ ଓ ସୃଷ୍ଟି କରିବାରେ ସଫଳ ହେବାକୁ ଯାଇଥିଲା, କିନ୍ତୁ ୰କୃପାସିନ୍ଧୁ ଜେନାଙ୍କର ମୃତ୍ୟୁପରେ ଆର୍ଥିକ ଅନାଟନ ଯୋଗୁଁ "ଲୋକାଗ୍ନର" ପ୍ରକାଶ ହୋଇ ପାରିଲା ନାହିଁ । ମୁଁ ଯାହା ଆଶଙ୍କା କରିଥିଲି ତାହାହିଁ ହେଲା । ନିଜର

ଅର୍ଥନୈତିକ ସଙ୍କଟ ଯୋଗୁଁ ବୈକୁଣ୍ଠ ନିରାଶ ହେଲା । ଶେଷରେ ଅଭାବ ଅସୁବିଧାରେ ଦିନ କାଟିବାକୁ ପଡ଼ିଲା । ଏକପକ୍ଷରେ କ୍ରାନ୍ତିକାରୀ ବିପ୍ଳବଠାରୁ ଦୂରେଇ ଯାଇଥିଲା ଏବଂ ଅନ୍ୟପକ୍ଷରେ କଲମ ମୁନରେ ବିପ୍ଳବ କରିବାକୁ ପ୍ରତିଷ୍ଠିତ "ଲୋକାଗ୍ରହ"ର ଅପମୃତ୍ୟୁ ହୋଇଗଲା । ବୈକୁଣ୍ଠ ମାନସିକ ଓ ଆର୍ଥିକ ଦୃଷ୍ଟିରୁ ଦୁର୍ବଳ ହୋଇଗଲା । ଶେଷରେ ହତାଶ ହୋଇ ମଦ ଅଭ୍ୟାସର ଆଶ୍ରା ନେଲା ସାମାୟିକ ଶାନ୍ତି ପାଇଁ । ତାହା ସାମୟିକ ନହୋଇ ଏକ ଅଭ୍ୟାସରେ ପରିଣତ ହେଲା । ପରିବାର ଉପରେ ତାର କୁ ପ୍ରଭାବ ମଧ ପଡ଼ିଲା । ଶେଷରେ ଏହିପରି ମାନସିକ ଓ କାୟୀକ ଦୁର୍ବଳତା ସମୟରେ ୧୯୯୮ ଓ ୧୯୯୯ ମସିହାରେ ଓଡ଼ିଶାର ଯେଉଁ ପ୍ରଳୟଙ୍କରୀ ସୂର୍ଯ୍ୟତାପ ଜନିତ ମୃତ୍ୟୁର ବିଭୀଷିକା ଆରମ୍ଭ ହୋଇଥିଲା, ବୈକୁଣ୍ଠ ହୋଇଥିଲା ତାହାର ପ୍ରଥମ ଶିକାର । ଅକାଳରେ ଏକ ସାମ୍ୟବାଦୀ ଚିନ୍ତାଧାରାର ପ୍ରଚଣ୍ଡ ପ୍ରତିଭାର ବିଲୟ ଘଟିଲା । ଓଡ଼ିଶା ତଥା ଦେଶ ଏକ ଚିନ୍ତାଶୀଳ ବ୍ୟକ୍ତିକୁ ହରାଇଲା ।

ବୈକୁଣ୍ଠ ସାମାଜିକ କୁପ୍ରଥା, ଯୌତୁକ ଓ ଜାତିପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଅନ୍ୟ ଏକ ଜାତିରେ ବିବାହ କରବାକୁ ଆଗେଇ ଆସିଥିଲା । କିନ୍ତୁ ଆମ ଅଞ୍ଚଳରେ ବହୁ ତଥାକଥିତ ସମାଜପତିମାନେ ଏହାକୁ ବିରୋଧ କରିବାକୁ ଆଗେଇ ଆସିଲେ । କିନ୍ତୁ ଅନ୍ୟକେତେକ ବନ୍ଧୁଙ୍କ ସହିତ ମୁଁ ୰କୁଞ୍ଜଦାଦା (ବୈକୁଣ୍ଠର ବାପା) ଙ୍କୁ ବୁଝାଇ ବାହାଘର କରାଇନେଲୁ । କିନ୍ତୁ ଗାଁକୁ ଯିବାକୁ ଲୋକମାନେ ବିରୋଧ କଲେ । ମୁଁ ଓ ଅନ୍ୟ ବନ୍ଧୁମାନେ ଏକତ୍ର ହୋଇ ନବଦମ୍ପତିକୁ ନେଇ ସର୍ଦପରେ ଗାଁକୁ ଗଲୁ ଏବଂ ବୈକୁଣ୍ଠର ପରିବାରକୁ ଗାଁରେ ଅବସ୍ଥାପିତ କଲୁ । ଏହା ଏକ ସାମାଜିକ ବିପ୍ଳବର ବିଜୟ ହେଲା ।

ଭଦ୍ରକ୍ କଲେଜରୁ ବି.ଏ. ପାସ୍ କଲାପରେ, ଦିଲ୍ଲୀରେ ଏମ୍.ଏ ପଢ଼ିବାକୁ ଗଲା । ସେଠାରେ କେତେକ ସାମ୍ୟବାଦୀ ଚିନ୍ତାଧାରାର ବ୍ୟକ୍ତିଙ୍କ ସହ ସମ୍ପର୍କ ଗଢ଼ିଉଠିଥିଲା । ବୈକୁଣ୍ଠ ନିଜର ସାମ୍ୟବାଦୀ ଚିନ୍ତାଧାରାକୁ ଶାଣିତ କରିଥିଲା । ଯାହାଫଳରେ ଚାକିରୀ ନକରିବାକୁ ସ୍ଥିର କଲା । ଇଚ୍ଛା କରିଥିଲେ ତା' ପରି ଜଣେ ମେଧାବୀ ଛାତ୍ର ଜଣେ ଆଇ.ଏ.ଏସ୍ ବା ବ୍ୟାଙ୍କ୍ ଅଫିସର ବା କୌଣସି କମ୍ପାନୀରେ ଉଚ୍ଚ ବେତନ ପାଇ ଚାକିରୀ କରିପାରିଥାଆନ୍ତା, କିନ୍ତୁ ଅଭାବ ଅସୁବିଧା ସତ୍ତ୍ୱେ ଚାକିରୀ ନକରିବାକୁ ସ୍ଥିର କଲା ଓ ସାମ୍ୟବାଦୀ ଚିନ୍ତାଧାରାକୁ ପ୍ରଚାର କରିବାକୁ "ଲୋକାଗ୍ରହ" ପରି ଏକ କ୍ରାନ୍ତିକାରୀ ପତ୍ରିକା ପ୍ରକାଶ କରିବାକୁ ସ୍ଥିର କଲା । ଏକ ଅନିଶ୍ଚିତ କଣ୍ଟକିତ ପଥକୁ ଅତିକ୍ରମ କରିବାକୁ ଆଗେଇ ଆସିଲା । କିନ୍ତୁ ସ୍ୱପ୍ନ ସାକାର ହେଲା ନାହିଁ । ଅକାଳରେ ବିରାଟ ବିପ୍ଳବୀ ପ୍ରତିଭାର ବିଲୟ ଘଟିଲା । ମୋ ପକ୍ଷେ ତଥା ସମାଜ ଓ ଦେଶ ପକ୍ଷେ ଅପୂରଣୀୟ କ୍ଷତି ହେଲା । ସମାଜରେ ଜଣେ ପ୍ରତିଷ୍ଠିତ ସ୍ୱାଧୀନଚେତା ବ୍ୟକ୍ତି ବା ଜଣେ ବିପ୍ଳବୀ ଚିନ୍ତାନାୟକ ରୂପେ ଗଢ଼ିବାକୁ ତାକୁ ଯଥା ସାହାଯ୍ୟ କରିବାକୁ ମୁଁ ଆଗେଇ ଆସିଥିଲି । କିନ୍ତୁ ସେ ସ୍ୱପ୍ନ ମୋର ସ୍ୱପ୍ନରେ ହିଁ ରହିଗଲା ।

ଖୋର୍ଦ୍ଧା



# ନକ୍ଷତ୍ରରୁ ଉଲ୍‌କା

**ବିଷ୍ଣୁ ରାଉତରାୟ**

ସମ୍ପର୍କରେ ବୈକୁଣ୍ଠ ମୋର ଭଣଜା । ସେ କିନ୍ତୁ କୌଳୀନ୍ୟ ସମ୍ପର୍କର ଉର୍ଦ୍ଧ୍ୱକୁ ଉଠି ଯାଇଥିଲା, ବିଗ୍ଭର ବିବେଚନା ଓ ଆଦର୍ଶଗତ ଅନୁଶୀଳନରେ । ସେ ଦୃଷ୍ଟିରୁ ତାର ଜୀବନ ଦର୍ଶନ, ମୂଲ୍ୟବୋଧ ଏବଂ କର୍ମ-କର୍ମାଣି ସଂକ୍ରାନ୍ତରେ ଆଲୋଚନା ସ୍ଥଳେ ସମ୍ପର୍କର ଭୂମିକା ଗୌଣ ।

ଦିଲ୍ଲୀ ସ୍କୁଲ ଅଫ ଏକୋନୋମିକ୍ସରେ ସେ ପଢୁଥିବା ବେଳେ ଥରେ ରାଉରକେଲା ଆସିଥିଲା । ତାକୁ ଘରକୁ ଡାକି ଆଣିଥିଲା ଶରତ, ଆଉ ଗୋଟିଏ ଭଣଜା । ମାତ୍ର ଦି'ଦିନ ରହିଥିଲା । ଖୁବ୍ କମ୍ କଥାବାର୍ତ୍ତା ହୋଇଛି ତା' ସହିତ । ତରୁଣ ଏବଂ ଯୁବ ସ୍ୱପ୍ନାଗ୍ଭରୀ ମାନଙ୍କର ଏତେ ଭିଡ଼ ଜମୁଥିଲା ଯେ, ସେଥିରେ ବ୍ୟକ୍ତିଗତ କଥାବାର୍ତ୍ତା ପାଇଁ ଅବକାଶ ନଥିଲା । ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି ଭଦ୍ରକ କଲେଜରେ ଗ୍ଭରିବର୍ଷ ପଢ଼ି ଦିଲ୍ଲୀ ଯାଇଥିବା ପିଲାର ଏତେ ଜନ ସମ୍ପର୍କ ଗଢ଼ି ଉଠିଥିବା ଦେଖି । ଅବଶ୍ୟ ମାର୍କ୍ସବାଦୀ ଦର୍ଶନର ଉଷ୍ମ ସ୍ରୋତଧାରା ବିସ୍ତୀର୍ଣ୍ଣ ବନ୍ଧୁର ଭୂମିକୁ ପ୍ଲାବନ କରିବା ପାଇଁ ସମୟ ଲାଗେ ନାହିଁ । ଯୁବକ ମାନଙ୍କ ସ୍ୱପ୍ନଜର୍ଜର ଆଖିରେ ଥିଲା ଦୁନିଆଁକୁ ବଦଳାଇ ଦେବାର ଦୁର୍ବାର ଅଭିଳାଷ । ସେମାନେ ଅପେକ୍ଷାରେ ଥିଲେ ବୈକୁଣ୍ଠର ନେତୃତ୍ୱକୁ । ମୁଁ ହଁ ଖୋଲି କହି ନଥିଲେ ବି ମନେ ମନେ ଖୁସି ହୋଇଥିଲି । ଅନ୍ଧାର ଓଡ଼ିଶାରେ ତାହେଲେ ଜଳିବ ଆଲୋକର ଦିହୁଡ଼ି !

ସେମାନଙ୍କ ଆଲୋଚନାରେ ମୋର ଅଦୌ ଆଗ୍ରହ ନଥିବା ପରି ମୁଁ ଅନ୍ତରାଳରୁ କାନ ପାତିଥାଏ । ଓଡ଼ିଶାର ବହୁ ଖ୍ୟାତନାମା ବ୍ୟକ୍ତି, କବି ଓ ଲେଖକ ମାନଙ୍କର ନାମ ଉଚ୍ଚାରିତ ହୋଇଥାଏ ଆଲୋଚନାରେ । ତା ମଧ୍ୟରୁ କେତେକଙ୍କ ନାମ ଶୁଣି ମୋର ଦେହ ଶୀତେଇ ଉଠିଥିଲା । ଅସୁରୁଣୀ ବୁଢ଼ୀର ଫାନ୍ଦରେ ପଡ଼ିଯିବେ ନାହିଁତ ପିଲାମାନେ ? କାରଣ ଓଡ଼ିଶାରେ ସହଜିଆ ବଇଷ୍ଣିମଙ୍କ ସଂଖ୍ୟା ପରି କାଗଜ-ବିପ୍ଳବୀ, କବି, ଲେଖକଙ୍କ ସଂଖ୍ୟା ମଧ୍ୟ କମ୍ ନୁହେଁ । କଅଁଳିଆ ମୁଣ୍ଡ ଗ୍ଭେବାଇ ହଜମ କରିବାରେ ଏମାନେ ଓସ୍ତାଦ୍ । ଏକଥା ମୁଁ ଶରତକୁ କହି, ସାବଧାନ କରିଦେଇଥିଲି । ହୁଏତ ଏହା ମୋର 'ପେଟି ବୁର୍ଜୁଆ' ମାନସିକତା ବୋଲି ମନେକରି, କାନରେ ପୂରେଇ ନଥିବେ । କାରଣ ଇତିହାସର ପୃଷ୍ଠା ଆଡ଼େଇ ଦେଇ ନୂଆ ଇତିହାସ ରଚିବା ପାଇଁ ତରତରରେ ଥିଲେ ସେମାନେ ।

ରାଉରକେଲାରୁ ଦିଲ୍ଲୀ ଫେରିଗଲା ବେଳେ କଥାରେ କଥାରେ ବୈକୁଣ୍ଠକୁ କହିଥିଲି, ଦିଲ୍ଲୀରେ ରହି କମ୍ପିଟେଟିଭ ପରିକ୍ଷାଟା ଦେଇ ଦେବାପାଇଁ । ସେ ଗମ୍ଭୀର ହୋଇ କହିଥିଲା, "ମାମୁଁ, ଏକଥା ମୋର ସବୁ ଶୁଭେଚ୍ଛୁମାନେ କହୁଛନ୍ତି । ଥରେ ପ୍ରଲୋଭନରେ ପାଦଦେଲେ ଗୋଡ଼ ଖସିଯାଇପାରେ । ମୁଁ ମୋ ରାସ୍ତା ବାଛି ସାରିଛି ।" ଶୁଣି ମନେ ମନେ

ମୁଁ ଗର୍ବ ଅନୁଭବ କରିଥିଲି । ଦାରିଦ୍ର୍ୟ, ଅକଳନ ଦୁଃଖ କଷ୍ଟ ଓ ପ୍ରତିରୋଧକୁ ବେଖାତିର କରି ଉଞ୍ଚା ଉଠିଥିବା ମୁଣ୍ଡକୁ ଉପଦେଶ ନୁହେଁ, ଆବଶ୍ୟକ ଉଷ୍ମ ଆବାହନ । ସେଦିନ ବୈକୁଣ୍ଠର କଥାରୁ ମୋର ଏହି ଉପଲବ୍ଧି ହୋଇଥିଲା ।

ଦିଲ୍ଲୀରୁ ଫେରି ଭୁବନେଶ୍ୱରରୁ ଗୋଟିଏ କାଗଜ ବାହାର କରିବାର ଯୋଜନା ବୈକୁଣ୍ଠ କରୁଛି ବୋଲି ଶରତ ଠାରୁ ଶୁଣିଥିଲି । ଏକ ଉଚ୍ଚ ଧରଣର କାଗଜ ପ୍ରକାଶ କରିବା ପାଇଁ ଅର୍ଥକୁ ଛାଡ଼ି ତାର ଆଉ ସବୁ ବିଦ୍ୟା ବୁଦ୍ଧି ଓ ଦକ୍ଷତା ଥିଲା । ମୋ ପରି ଅନେକ ଆଶା କରିଥିଲେ ଯେ ଏକ ପ୍ରତିବଦ୍ଧିତ ଯୁବ ସାମୁଖ୍ୟର ଏହା ହେବ ପ୍ରଧାନ ପ୍ରଖର ଆୟୁଧ । ସାପ୍ତାହିକ 'ଲୋକାସ୍ତ୍ରର' ପ୍ରକାଶ ପାଇଲା ବୈକୁଣ୍ଠ ସମ୍ପାଦନାରେ । ନୂଆ ଭାବ, ନୂଆ ଭାଷା, ନୂତନ ଅଭିବ୍ୟକ୍ତିରେ "ଲୋକାସ୍ତ୍ରର" ବଣନିଆଁ ପରି ବ୍ୟାପିଗଲା ଓଡ଼ିଶାର ସବୁ ମୁଲକକୁ । ବିଶେଷ କରି ଯୁବ ସମାଜରେ ଏଥିପାଇଁ ଚହଳ ଖେଳି ଯାଇଥିଲା । ଫଳ ସ୍ୱରୂପ ଭୁବନେଶ୍ୱରରେ ମିତ୍ର ଅପେକ୍ଷା ଏକ ଶକ୍ତିଶାଳୀ ଶତ୍ରୁପକ୍ଷ ତିଆରି ହୋଇଗଲା ଭିତରେ ଭିତରେ । "ଲୋକାସ୍ତ୍ରର" ଚାଲୁ ରହିଲେ ଅନେକଙ୍କର ଦାନା ପାଣି ବୁଡ଼ିବାର ଆଶଙ୍କା ଥିଲା । ଅଭିମନ୍ୟୁକୁ ଚକ୍ରବ୍ୟୁହରେ ବେଢ଼ିବା ପରି ସେମାନେ ବୈକୁଣ୍ଠକୁ ଘେରିଗଲେ । ଏହି ବ୍ୟୁହ ରଚନାରେ ବିନ୍ଧାଣୀ ଥିଲେ ତାର କେତେକ ତଥାକଥିତ ବିପ୍ଳବୀ ବନ୍ଧୁ ଏବଂ ଶୁଭେଚ୍ଛୁ । ବାଟବଣା ହୋଇ ବୈକୁଣ୍ଠ ଅସୁରୁଣୀ ଫାନ୍ଦରେ ପଡ଼ିଗଲା । ଅଳ୍ପଦିନରେ ବନ୍ଦ ହୋଇଗଲା 'ଲୋକାସ୍ତ୍ରର' । ଏକ ଉଜ୍ଜ୍ୱଳ ସମ୍ଭାବନା ଅଦିନରେ ମଉଳିଗଲା ।

ପ୍ରଥମରୁ ବୈକୁଣ୍ଠ ଭୁଲ କରିଥିଲା । ମଣିଷ ଚିହ୍ନି ଏକ ଦୃଢ଼ ସଂଗଠନ ଗଢ଼ି ତୋଳିବା କଥା ସେ ଚିନ୍ତା କରିନଥିଲା । କିଛି ହାସଲ କରିବା ଲାଳସାରେ ତାକୁ ଟେକି ଧରିଥିବା ବନ୍ଧୁ ମାନଙ୍କ ଦ୍ୱାରା ସେ ପ୍ରତାରିତ ହୋଇଗଲା । ଚରମ ଦୁଃଖରେ ତାର ମନପ୍ରାଣ ଓ ବ୍ୟକ୍ତିତ୍ୱ କାଚଘର ପରି ଭାଙ୍ଗି ଚୂର୍‌ମାର୍ ହୋଇଗଲା । ଏହାପରେ ଜୀବନ ଥିଲା ତା'ପାଇଁ ଦୁର୍ବିସହ । ଜାଣି ଜାଣି ସେ ଠେଲିହୋଇଗଲା ମୃତ୍ୟୁ ମୁଖକୁ । ଏଭଳି ବହୁ ପ୍ରତିଭାର ଅକାଳେ ବିଲୟ ଘଟିଛି ଓଡ଼ିଶାରେ । ବୈକୁଣ୍ଠ ତାର ଅନ୍ୟତମ ଉଦାହରଣ । ସେ ନକ୍ଷତ୍ରରୁ ଉଲ୍‌କା ହୋଇ ଖସି ପଡ଼ିଲା ଭୂତଳକୁ । ତଥାପି ସେ କ୍ଷଣିକର ଆଲୋକତ !

ନୟାପଲ୍ଲୀ, ଭୁବନେଶ୍ୱର



## ପ୍ରତିଭା ନୁହେଁ 'ଜିନିୟସ୍'

# ବନ୍ଧୁ ଓ ସାଥୀ ବୈକୁଣ୍ଠ ବାବୁ

*କୁଳମଣି ଜେନା*

'ପ୍ରବାହ' ପତ୍ରିକା ପାଇଁ ପ୍ରବାସରେ ଓଡ଼ିଆ ପ୍ରତିଭା ଅନ୍ୱେଷଣରେ କଲିକତା ଯାଇଥାଏ । ସେଠାରେ ଦେଖା ହୁଅନ୍ତି କମଳାକାନ୍ତ ମହାନ୍ତି । ସେତେବେଳର 'ବିଜ୍‌ନେସ୍ ଟେଲିଗ୍ରାଫ'ର ମୁଖ୍ୟ । କଥା ପ୍ରସଙ୍ଗରେ ସେ ମୋତେ କହିଲେ ଓଡ଼ିଶାରେ ଟାଲେଣ୍ଟର ଅଭାବ ନାହିଁ କିନ୍ତୁ 'ଜିନିୟସ୍' କମ୍ । ମୁଁ ତାଙ୍କୁ କହିଲି, "ଆପଣ କ'ଣ ଜଣେ ହେଲେ 'ଜିନିୟସ୍' ଓଡ଼ିଶାରେ ଦେଖି ନାହାନ୍ତି ?" ସେ କହିଲେ, "ମୋ ଜାଣିବାରେ ଓଡ଼ିଶାରେ ଆମ ସମୟରେ ଜଣେ ଜିନିୟସ୍‌କୁ ମୁଁ ଦେଖିଥିଲି । ସିଏ ହେଉଛନ୍ତି ବୈକୁଣ୍ଠ ବିଶ୍ୱାଳ । ଏକଦା ଭଦ୍ରକ ମହାବିଦ୍ୟାଳୟର ସଭାପତି, ଦିଲ୍ଲୀ ସ୍କୁଲ୍ ଅଫ୍ ଇକନୋମିକ୍ସର ଛାତ୍ର । କିନ୍ତୁ ସେ କେଉଁଆଡ଼େ ଚାଲିଗଲେ ମୁଁ ତାଙ୍କ ଖବର ରଖିପାରିନି ।" ମୁଁ କହିଲି, "କମଳାକାନ୍ତ ବାବୁ, ସେ ଆଉ ଇହଧାମରେ ନାହାନ୍ତି । ବିଗତ ବର୍ଷର କାଳ ବୈଶାଖି ତାଙ୍କୁ ଆମ ଗହଣରୁ ଛଡ଼େଇ ନେଇ ଯାଇଛି ।" ମୋ କଥା ଶୁଣି ସେ ସ୍ତମ୍ଭୀଭୂତ ହୋଇ ଯାଇଥିଲେ । ଦୀର୍ଘ ପାଞ୍ଚ ମିନିଟ୍ ଧରି କୌଣସି କଥା କହି ନଥିଲେ । ତା ପରେ ମୁଁ ତାଙ୍କୁ କହିଥିଲି - ବୈକୁଣ୍ଠ ବାବୁଙ୍କ ମୃତ୍ୟୁର ପ୍ରକୃତ କାରଣ ନଥିଲା କାଳ ବୈଶାଖି; ଥିଲା ଦାରିଦ୍ର୍ୟ ଓ ଓଡ଼ିଆ ଜାତିର ତାଙ୍କପ୍ରତି ଅବହେଳା । ଜୀବନରେ ଅନେକ କିଛି ସ୍ୱପ୍ନକୁ ଧାରଣ କରି ଆସିଥିବା ସେଇ ନମସ୍ୟ ବ୍ୟକ୍ତିତ୍ୱ ଅବହେଳାର ଶିକାର ହୋଇ ଅକାଳରେ ଝରି ପଡ଼ିଲେ । 'ବେଳା', 'ଆଭା', 'ଅଗ୍ନିବୀଣା', 'ଲୋକାଗ୍ରର' ଠାରୁ ଆରମ୍ଭ କରି ନକ୍‌ସଲ୍‌ବାଡ଼ୀ ଆନ୍ଦୋଳନ, ଓଡ଼ିଶା ପ୍ରଗତିଶୀଳ ଲେଖକ ଶିଳ୍ପୀ ବୁଦ୍ଧିଜୀବି ସଂଘ -- ରବି ସିଂ, ରବି ଦାସଙ୍କ ସହ ଅନନ୍ୟ ସଖ୍ୟ ସହଯୋଗ, ପ୍ରଗତିଶୀଳ ସାମ୍ବାଦିକତାର ସୂତ୍ରଧର ଜଣେ ନିରହଂକାରୀ, ଅମାୟିକ, ସ୍ୱାଭିମାନୀ ମଣିଷକୁ କେହି କଦର କଲେନି । ଜୀବନରେ ସବୁ ସ୍ୱପ୍ନ ମାନ ଧୂଳିସାତ୍ ହେଲାପରେ ଯାହାବା ବାକୀ ଥିଲା, ସେଇ ଅମୂଲ୍ୟ ଶରୀରଟି ପ୍ରଥମ ସୂର୍ଯ୍ୟ କ୍ରୋଧର ଶିକାର ହେଲା ସର୍ବୋଚ୍ଚ କାଳ ବୈଶାଖିର ବର୍ଷରେ ।

ମୋର ମା'ର ମୃତ୍ୟୁପରେ ମୁଁ ତାଙ୍କ ପାଖରେ ଆଶ୍ୱାସନା ଖୋଜିଁଛି । ସେ ମୋତେ ଭାଇ ପରି, ବନ୍ଧୁ ପରି, କୋଳାଇ ନେଇଥିଲେ । ମୋ କବି ପ୍ରତିଭାର ସେ ଥିଲେ ପୂଜାରୀ ଓ ପ୍ରେରଣା ଦାତା । ସେ ଯାହା ହୋଇ ପାରିଲେନି, ତାହା ହେବାପାଇଁ ବୋଧହୁଏ ପ୍ରେରଣା ଯୋଗାଇ ଚାଲିଛନ୍ତି ଏଯାବତ୍ । ମୁଁ ତାଙ୍କୁ ସଂଗ୍ରାମର ସାଥୀ (କମ୍‌ରେଡ୍) ଭାବରେ ଯେତିକି ପାଇଥିଲି, ସେତିକି ପାଇଥିଲି ପ୍ରେରଣାଦାତା ବନ୍ଧୁ ଭାବରେ ।

କମଳାକାନ୍ତ ବାବୁ କହିଥିଲେ, "କୁଳମଣିବାବୁ, ମୁଁ ଯଦି ଜାଣିଥାନ୍ତି ବୈକୁଣ୍ଠବାବୁ ଦାରିଦ୍ର୍ୟ ଭୋଗୁଥିଲେ, ମୁଁ ତାଙ୍କୁ ମାସିକ ଦୁଇଟି ଲେଖାରୁ ୧୫୦୦୦/- ଟଙ୍କା ଇଂରେଜୀ ଖବର କାଗଜରୁ ଯୋଗାଇ ଦେଇ ପାରିଥାନ୍ତି ।" ମୁଁ ଦୁଃଖ ପ୍ରକାଶ କରିଥିଲି ତାହା ଆଉ ସମ୍ଭବ ନୁହେଁ । ଆମେ ତାଙ୍କୁ ସବୁଦିନ ପାଇଁ ଦୂରେଇ ସାରିଛୁ ।

ବୈକୁଣ୍ଠବାବୁ ଥିଲେ ସାମାଜିକ ଆନ୍ଦୋଳନକାରୀ, ସାଂସ୍କୃତିକ କର୍ମୀ ଓ ସବଳ ସାମ୍ବାଦିକ ତଥା ଜଣେ ଅତିମାତ୍ରାରେ ଦରଦୀ ମଣିଷ । ତାଙ୍କ ସ୍ମୃତିଚାରଣ କରିବା ଅର୍ଥ ବେଶ୍ କିଛି ପ୍ରେରଣା ଲାଭ କରିବା । ତାଙ୍କ ସୃଷ୍ଟିକୁ କେଉଁଠୁ ସଂଗ୍ରହ କରି ଆଣି ଯଦି ଖଣ୍ଡିଏ ପୁସ୍ତକ ବାହାର କରାଯାଇପାରନ୍ତା, ତେବେ ତାଙ୍କ ପ୍ରତି କିଛିଟା କୃତଜ୍ଞତା ଜଣାଇ ହୁଅନ୍ତା । ବୈକୁଣ୍ଠ ବାବୁଙ୍କୁ ମୁଁ ଆଉ ସାମନା ସାମନି ପାଇ ପାରୁନି କି ଆଉ ପାଇ ପାରିବିନି । କିନ୍ତୁ ମୋର ପ୍ରତିଟି ନିଶ୍ୱାସରେ ସେ ମୋ ସହିତ ଅଛନ୍ତି ।

ଅଧ୍ୟାପକ, ନିଆଳି କଲେଜ



# ବୈକୁଣ୍ଠ ଆଜି ବୈକୁଣ୍ଠପୁରେ

***ଭାଗବତ ପ୍ରସାଦ ପାତ୍ର***

ବୈକୁଣ୍ଠ ନାଥ ବିଶ୍ୱାଳ ଓଡ଼ିଶାର ମାନଚିତ୍ରରେ ବହୁ ସ୍ଥାନରେ ଶୋଭା ପାଉଛି । ଗତ ତା ୨୮/୦୫/୯୮ ରିଖରେ ଭୁବନେଶ୍ୱରରେ ପ୍ରଚଣ୍ଡ ରୌଦ୍ରତାପର ଶୀକାର ହୋଇ ଇହଲୀଳା ସମାପ୍ତ କରି ସତେ ଅବା ବୈକୁଣ୍ଠପୁରରେ ବିଶ୍ରାମ କରିଛି । ମାତ୍ର ୪୭ ବର୍ଷ ବୟସରେ ଧରାପୃଷ୍ଠରୁ ଚିର ବିଦାୟ ନେଇଛି । ପ୍ରିୟପରିଜନ, ବନ୍ଧୁ ବାନ୍ଧବ, ସାଥୀ ସହୋଦର ସମସ୍ତେ ଏପ୍ରକାର ଏକ ମର୍ମନ୍ତୁଦ ଖବରରେ ହତବାକ୍ ।

ନିର୍ଜନତା ମଧ୍ୟରେ ନିଜ ପାଇଁ ସ୍ଥାନ ଖୋଜୁଥିବା ମଣିଷଟି ଆଜି ଦୂର ନିର୍ଜନ ସ୍ଥାନକୁ ଚାଲି ଯାଇଛି । ଆଶା ଓ ଆକାଂକ୍ଷା ଝଟକି ଉଠୁଛି ପୁନଶ୍ଚ ଜନ୍ମ ନେବା ପାଇଁ । ସାଧାରଣ ମଣିଷଟିଏ ଭଳି ଅତି ସାଧାରଣ ଭାବେ ହଜି ଯାଇଛି ସେ । ନିଜର ବ୍ୟକ୍ତିତ୍ୱ ଅନ୍ୟ ଉପରେ ଆଦୌ ଜାହିର କରି ନାହିଁ । ବରଂ ବହୁତ କିଛି ସେ ହରାଇଛି । ଏହା ହିଁ ତା' ଜୀବନର ଅସାଧାରଣ ପ୍ରତିଭାର ପରିଚୟ । ଏକାଧାରରେ ସେ ଜଣେ କବି, ଲେଖକ, ସ୍ତମ୍ଭକାର, ବାଗ୍ମୀ, ସାମ୍ବାଦିକ, ନିରଳସ ଗାଉଁଲି ଲୋକଟିଏ ।

ଏଇ କାଲି ପରି ଲାଗୁଛି । ୧୯୬୯ ମସିହାରେ ଛାତ୍ରଜୀବନରେ ଭଦ୍ରକ କଲେଜରେ ପରିଚୟ । ୧୯୬୯-୭୦ ଓ ୧୯୭୦-୭୧ ମସିହାରେ ସେ କଲେଜ ୟୁନିଅନର ସଭାପତି ଭାବେ ନିର୍ବାଚିତ ହୋଇଥିଲା । ଅଳ୍ପଦିନ ଭିତରେ ଓଡ଼ିଶାର ଛାତ୍ର

ସମାଜ, ଶିକ୍ଷକ ଓ ରାଜନୈତିକ ନେତୃବୃନ୍ଦଙ୍କ ନିକଟରେ ସୁପରିଚିତ ହୋଇ ପାରିଥିଲା କେବଳ ନିଜର ସାଲିସବିହୀନ ଛାତ୍ର ସଂଗ୍ରାମର ନେତୃତ୍ୱ ପାଇଁ । ଆନ୍ତଃକଲେଜ ତର୍କ ପ୍ରତିଯୋଗୀତାରେ ସେହି ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ରାଜ୍ୟପାଳଙ୍କ ପ୍ରଦତ୍ତ ସ୍ୱର୍ଣ୍ଣପଦକ ପାଇ ନିଜର ତଥା ଭଦ୍ରକ କଲେଜର ସୁନାମ ଆଣିପାରିଥିଲା । ୧୯୬୯ ମସିହାରେ ତତ୍କାଳିନ ସିଂହଦେଓ ସରକାର ବିରୁଦ୍ଧରେ ଗଢ଼ି ଉଠିଥିବା ଛାତ୍ର ଆନ୍ଦୋଳନର ମିଳିତ କ୍ରିୟାନୁଷ୍ଠାନ କମିଟିର ଆବାହକ ହୋଇ ଆନ୍ଦୋଳନ ସୁପରିଚାଳନା କରିବା ସମୟରେ ରାଜନୈତିକ ବନ୍ଦୀ ହିସାବରେ ୩୨ଦିନ କାରାବରଣ କରିଥିଲା । ୧୯୭୧ ମସିହାରେ ମାର୍କସବାଦୀ ଦଳ ସମର୍ଥିତ ଭାରତର ଛାତ୍ର ଫେଡେରେସନ୍ (S.F.I)ର ଓଡ଼ିଶା ରାଜ୍ୟ ପ୍ରେସିଡିୟମ୍‌ର ଚେୟାରମେନ ଭାବେ ନିର୍ବାଚିତ ହୋଇଥିଲା । ସେହିବର୍ଷ ଅର୍ଥନୀତି ଅନର୍ସରେ ଭଦ୍ରକ କଲେଜରୁ ପ୍ରଥମ ଶ୍ରେଣୀରେ ବି.ଏ.ପାସ୍ କରି ପରେ ଦିଲ୍ଲୀ ସ୍କୁଲ୍ ଅଫ୍ ଇକୋନୋମିକ୍ସରୁ ଏମ୍.ଏ. ପାଶ କରିଥିଲା । ୧୯୭୧ ରୁ ୧୯୭୭ ଯାଏଁ ଦିଲ୍ଲୀରେ ହିଁ ରହିଯାଇଥିଲା । ଦିଲ୍ଲୀରୁ ନିଜର ସାମ୍ବାଦିକତା ଜୀବନ ଆରମ୍ଭକରି ପ୍ରଥମେ ୧୯୭୩ ମସିହାରେ ଡଃ ଶଙ୍କର ଦୟାଲ ଶର୍ମାଙ୍କ ମୁଖ୍ୟ ସମ୍ପାଦନାରେ 'ସୋସିଏଲିଷ୍ଟ ଇଣ୍ଡିଆ' ର ସମ୍ପାଦକ ଭାବେ, ଜର୍ଜ ଫର୍ଣ୍ଣାଣ୍ଡିଜ୍‌ଙ୍କ ସମ୍ପାଦନାରେ 'ପ୍ରତିପକ୍ଷ' ର ସହ ସମ୍ପାଦକ ଭାବେ କାର୍ଯ୍ୟକରି ସୁନାମ ଅର୍ଜନ କରି ପାରିଥିଲା । ୧୯୭୪-୭୫ରେ ଜଣେ ଅର୍ଥନୈତିକ ସ୍ତମ୍ଭକାର ହିସାବରେ ବହୁ ଇଂରାଜୀ ଦୈନିକ, ସାପ୍ତାହିକ, ମାସିକ ପତ୍ରିକାରେ ନିଜର ସ୍ୱାତନ୍ତ୍ର୍ୟ ପ୍ରତିପାଦିତ କରିପାରିଥିଲା । ଜରୁରୀକାଳିନ ପରିସ୍ଥିତିରେ ତା' ଲିଖିତ ପାଣ୍ଡୁଲିପି ମୁଦ୍ରିତ ହେବା ଅବସ୍ଥାରେ ଦିଲ୍ଲୀ ପୁଲିସ ଦ୍ୱାରା ସମସ୍ତ ଛାପାକପି ଓ ପାଣ୍ଡୁଲିପି ଜବତ କରି ନଷ୍ଟ କରିଦିଆଯିବା ପରେ ସେ ନିଜ ଜନ୍ମମାଟି ଓଡ଼ିଶାକୁ ଫେରିଆସି ଭୁବନେଶ୍ୱର ରୁ ଓଡ଼ିଶାର ପ୍ରଥମ ଓଡ଼ିଆ ସାପ୍ତାହିକ 'ଲୋକାଗ୍ରହ' ପ୍ରକାଶ କରିଥିଲା ଓ ତାହା ସମଗ୍ର ପାଠକ ସମାଜରେ ଖୁବ୍ ଆଦୃତ ହୋଇଥିଲା । ୧୯୭୭-୭୮ରେ ସେ 'ଭାରତ-ଚୀନ ମୈତ୍ରୀ ସଂଘ'ର ସାଧାରଣ ସମ୍ପାଦକ ଭାବେ ନିର୍ବାଚିତ ହୋଇଥିଲା ଏବଂ ସେହି ସମୟରେ ବାମପନ୍ଥୀ ଚିନ୍ତାଧାରା ସହ କିଛି ପରିମାଣରେ ମତଭେଦ ହୋଇଯିବାରୁ ଦୀର୍ଘଦିନ ଧରି ବାମପନ୍ଥୀ ସଂଗଠନ ଠାରୁ ଦୂରେଇ ରହି ଏକ ପ୍ରକାର ନିର୍ବାସିତ ଜୀବନ ଅତିବାହିତ କରୁଥିଲା । ଇତି ମଧ୍ୟରେ ସାପ୍ତାହିକ 'ଲୋକାଗ୍ରହ' ପ୍ରକାଶନ ବନ୍ଦ ହୋଇଯାଇଥିଲା ଓ ପରେ ପରେ ସେ ଦୈନିକ 'ନବ ପ୍ରଭାତ' ପ୍ରକାଶକରି ଏକ ପ୍ରକାର ସଙ୍କୁଚିତ ଅବସ୍ଥାରେ ଚଳି ଆସୁଥିଲା ।

ନିଜର ରାଜନୈତିକ ଜୀବନର ଭଙ୍ଗା ବେଶିଦିନ ରହିଲା ନାହିଁ । ନବଗଠିତ ଓଡ଼ିଶା ବିକାଶ ପରିଷଦ ନାମକ ଏକ ରେଜେଷ୍ଟ୍ରି ଭୁକ୍ତ ରାଜନୈତିକ ଦଳରୁ ଭୁବନେଶ୍ୱର ଲୋକସଭା ଆସନରୁ ୧୯୯୧ ମସିହାରେ ପ୍ରାର୍ଥୀ ହୋଇ ସାଧାରଣ ଜୀବନକୁ ଚଳଚଞ୍ଚଳ କରି ପାରିଥିଲା । ପରେ ଓଡ଼ିଶା ବିକାଶ ପରିଷଦ ନିଷ୍କ୍ରିୟ ହୋଇଯିବାରୁ ସେହି ଭୁବନେଶ୍ୱର

ଆସନରୁ ଜନତା ପାର୍ଟିର ପ୍ରାର୍ଥୀ ରୂପେ ଛିଡ଼ାହୋଇ ଏକ ସମ୍ମାନଜନକ ଭୋଟ ପାଇପାରିଥିଲା । ପ୍ରାୟ ଦୁଇବର୍ଷରୁ ଅଧିକ ହେବ ସେ ଭୁବନେଶ୍ୱରରୁ ପ୍ରକାଶିତ ଅନ୍ୟବହୁ ଖବରକାଗଜ ସହ ନିଜକୁ ସଂଶ୍ଳିଷ୍ଟ ରଖିଥିଲା । ଓ 'ନବପ୍ରଭାତ'ର ପ୍ରକାଶନ ବନ୍ଦ ହୋଇଯାଇଥିଲା ।

ପରିବାର କହିଲେ, ନିଜର ସ୍ତ୍ରୀ ଶ୍ରୀମତୀ ସତ୍ୟଭାମା ବିଶ୍ୱାଳ ସୁଦୂର ସୁନ୍ଦରଗଡ଼ ଜିଲ୍ଲାରେ ବନ୍ଧବାହାଲ ଉଚ୍ଚ ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଅଛନ୍ତି । ଝିଅ ଚେତନା ବିଶ୍ୱାଳ ଭୁବନେଶ୍ୱରରେ ବି.ଏ. ଶ୍ରେଣୀର ଶେଷ ବର୍ଷ ଛାତ୍ରୀ । ପୁଅ ଚିନ୍ମୟ ବିଶ୍ୱାଳ ବି.ଏ. ଶ୍ରେଣୀର ପ୍ରୀ-ଡିଗ୍ରୀ ଛାତ୍ର । ଭୁବନେଶ୍ୱରସ୍ଥ ଟଙ୍କପାଣି ରୋଡ୍‌ରେ ନିଜର ସମସ୍ତ ସମ୍ବଳ ବିନିମୟରେ ଗୋଟିଏ ତିନିବଖରା ପକ୍‌କାଘର ସ୍ତ୍ରୀ, ପୁଅ, ଝିଅଙ୍କ ପାଇଁ ଛାଡ଼ି ଯାଇ ନିଜର ସମସ୍ତ ଆଶା ଆକାଂକ୍ଷା ଓ ସମ୍ଭାବନାକୁ ସେ ନିଜସହ ନେଇ ଚାଲିଯାଇଛି ।

ବହୁ ବନ୍ଧୁଙ୍କ ଭିତରୁ ମୁଁ କେବଳ ତା'ର ଅତି ପାଖରେ ବହୁ ସମୟ କଟାଇଛି । ତା' ଭିତରର ମଣିଷପଣିଆକୁ ହୃଦ୍‌ବୋଧ କରିଛି । ବୈକୁଣ୍ଠର ଅବର୍ତ୍ତମାନ ଆଦୌ ବିଶ୍ୱାସକୁ ଆସୁନାହିଁ । କେଜାଣି କେମିତି ଲାଗୁଛି-ସେ ଆଗ ଭଳି ମୋ ପାଖରେ ଅଛି । ସାହିତ୍ୟ, ସଂସ୍କୃତି, ସାମାଜିକ, ତଥା ସମ୍ବାଦ ପରିବେଷଣ ସମ୍ବନ୍ଧରେ ପୂର୍ବଭଳି ଆମର ଆଲୋଚନା ଚାଲୁଛି । ମୋ ପାଖରେ ଥିବାର ଅନୁଭବ କ୍ରମଶଃ ତୀବ୍ର ହେଉଛି ।

ଛାତ୍ର ଜୀବନରେ ୧୯୬୯ ମସିହାରେ ସେ ଚାନ୍ଦପୁର ବେଳା ଭୂଇଁରେ ରଚନା କରିଥିବା ଏକ ପ୍ରଣୟ ପରିପୁଷ୍ଟ ଚେତନା ସମ୍ଭୃତ କବିତାଟି ମୋର ବାରମ୍ବାର ମନେ ପଡୁଛି । ଆଜି ଏପରି ଜଣେ ବନ୍ଧୁଙ୍କୁ ତାଙ୍କ ଲିଖିତ କବିତାର ଗୋଟିଏ ପଂକ୍ତି ତାଙ୍କରି ଉଦ୍ଦେଶ୍ୟରେ ଉପସ୍ଥାପନ କରୁଛି -

"ଅନୁପମା ତୁମେ ବିଳାପ କରଗୋ
ମମତା ଯେ ଏଠି ଶୋଇଛି,
ନୀଳଯମୁନାର ବକ୍ଷ ଉପରେ
ଶାହାଜାହାନ୍ ଅଶ୍ରୁ ଝରିଛି ।"

ଆଶା ଓ ବିଶ୍ୱାସ, ବୈକୁଣ୍ଠପୁରରେ ରହି ତିରିଶ ବର୍ଷ ତଳର ସତ୍ୟଲବ୍ଧ କବିତା ପଂକ୍ତିଟି ତା' ଅମର ଆତ୍ମାକୁ ଚିରଶାନ୍ତି ପ୍ରଦାନ କରୁ । ଓଁ ଶାନ୍ତି, ଶାନ୍ତି, ଶାନ୍ତି ।।

(ଅଂଶୁଘାତ ଜନିତ ମୃତ ବରିଷ୍ଠ ସାମ୍ବାଦିକ ବୈକୁଣ୍ଠନାଥ ବିଶ୍ୱାଳଙ୍କ ଏକାଦଶାହ ଉପଲକ୍ଷେ ୯.୬.୯୮ରେ 'ନୂତନ ବାର୍ତ୍ତା'ରେ ପ୍ରକାଶିତ)

ରସାଳପୁର, ବାଲେଶ୍ୱର



# ଏପାରି ସେପାରି

ବିଜୟ ପଟ୍ଟନାୟକ

କିଏ କହେ ଏପାରିରେ
‘ଅଛି ଅଛି’ର ଆଲୁଅ
ଆଉ ସେପାରିରେ ନାହିଁ ନାହିଁର ଅନ୍ଧାର ?
ଏପାରିତ ଦି’ଦିନିଆ ଚଟିଘର
ସେପାରି ନିତିଦିନଘର ।
ଏପାରିରେ ଫୁଲ ଫୁଟେ ଝଡ଼ିଯାଏ
ସେପାରିରେ ଫୁଲ ଫୁଟେ, ଫୁଟି ବାସୁଥାଏ
ଏପାରିରେ ଚନ୍ଦ୍ରସୂର୍ଯ୍ୟ ଲୁଚକାଳି
ସେପାରିରେ ଚନ୍ଦ୍ରପାଖେ ସୂର୍ଯ୍ୟ ହସୁଥାଏ ।
ଏପାରିରେ ହସଲୁହ କୋଳାକୋଳି
ସେପାରିରେ ଆଦିଗନ୍ତ ହସର ଫସଲ,
ଏପାରିରେ କିଛି ଲୋକ ଆପଣାର
ସେ ପାରିରେ ସଭିଏଁ ତ ଆତ୍ମା ସହୋଦର ।
ଏପାରିରେ ଜୀବନର ମଧୁଶାଳା
ସେପାରିରେ ଅବିରତ ମଧୁର ଫୁଆରା
ଏପାରିରେ ବଞ୍ଚିବାକୁ ଦି’ଦିନ
ସେପାରିରେ ସମୟର ଅନନ୍ତ ପିଆଲା ।
ମାଟିର ବୈକୁଣ୍ଠ ଦିନେ ଗଲା ଚାଲି ତେଜି ଏହି ମାଟିମୟ ଘଟ,
ଯେଉଁଠି ରହିବ ସିଏ ଆନନ୍ଦର ରାଜ୍ୟ ସିଏ ଅନନ୍ତ ବୈକୁଣ୍ଠ ।
ସେପାରିର ବନ୍ଧୁମୋର ! କେବେ ଯଦି ଆଖି ଟେକି
ଚାହଁ ଏ ପାରିକୁ,
ଦେଖିବ କେମିତି ଜଣେ ଦିନରାତି ବଞ୍ଚିବା ଭିତରେ
ମରି ମରି ଝୁରୁଛି ତୁମକୁ ।

ବାଣୀବିହାର, ଭୁବନେଶ୍ୱର



# ସାର୍ ଚାଲିଗଲେ...

*ସୌମ୍ୟ ରଞ୍ଜନ ମହାନ୍ତି*

ଧଳା ଧୋତିର ମୁଣ୍ଡ ପଞ୍ଜାବୀ ପକେଟରେ । ମୋ ଆଡ଼କୁ ଅନାଇ ତରତରରେ ହସି ଦେଇ ଡ୍ରଇଂ ରୁମ୍‌ର ଚେୟାରରେ ବସି ପଡ଼ନ୍ତି । ମଇଳା ଧୋତି ପଞ୍ଜାବୀ । କିନ୍ତୁ ବସିବା ଠାଣିରେ କୌଣସି ଅସଞ୍ଜମ ନାହିଁ । ସୋଫାରେ ସିଧା ହୋଇ ବସନ୍ତି । ତାଙ୍କ ବ୍ୟକ୍ତିତ୍ୱରେ ବାହାରର ପୋଷାକର କୌଣସି ମୂଲ୍ୟ ହିଁ ନାହିଁ ।

"ସାର୍ ନମସ୍କାର । ଦି ତିନି ଦିନ ହେଲା ଦେଖା ନାହିଁ ?"

– (ଟିକେ ହସି) କହିବି ସବୁ ।

– ସାର୍ ଚାହା ?

– ନାଁ ପାଣି ଗିଲାସେ ।

(ପାଣି ପିଇ) "S.R (ମୋର ତାଙ୍କ ଦିଆ ନାଁ), ଏତେ ଲୋକ ବସିଛନ୍ତି, ମୋର ତୁମ ସାଙ୍ଗରେ ଦୁଇ ମିନିଟ୍ କଥା ଅଛି ।"

– ନାଁ ସାର୍, ଦୁଇ ତିନି ଦିନ ହେଲା ଦେଖା ହୋଇ ନାହିଁ । ଆପଣ ରହନ୍ତୁ ।

– (ବୁଢ଼ା ଆଙ୍ଗୁଳି ବିଷି ଆଙ୍ଗୁଳିରେ ମିଶାଇ) "ମୁଁ ଏଇ ଦଶ ମିନିଟ୍‌ରେ ଆସିବି" । (ମୁଁ ଇଙ୍ଗିତ ବୁଝିପାରେ)

– ନା ନା ସାର୍ । ବିଲ୍ଟୁ ଗାଡ଼ି ନେଇ ଯାଉ । ଆପଣ ସାଙ୍ଗେ ସାଙ୍ଗେ ପଳେଇ ଆସିବେ ।

– ଓହୋ, ମୋର ଟ ୩୦/- ରେ ହୋଇଯିବ । ଗାଡ଼ି ନେଇ ଗଲେ ଟ ୧୦୦/- ଖର୍ଚ୍ଚ ।

– ସେ ଲାଗୁ । ଆପଣ ଖରାରେ ଯାଆନ୍ତୁନି ।

(ବିଲ୍ଟୁ ତାଙ୍କୁ ନେଇକି ଯାଏ । ୧୫ ମିନିଟ୍ ଭିତରେ ସେ ଫେରି ଆସନ୍ତି)

ମୁଁ ଲୋକ ବିଦାକରି ଗାଧୋଇ ପାଧୋଇ ରେଡ଼ି । ଭାତ ମାଛ ଭଲ ପାଆନ୍ତି । ଖାଇସାରି ରୁମ୍ କବାଟ ବନ୍ଦକରି ଆମେ ଆରମ୍ଭ କରୁ ଅସରନ୍ତି ଗପ । ସେ ତ ଗପ ନୁହେଁ – ମୋ ଜୀବନ ମହାଭାରତର ସବୁ Problem ମୁଁ ତାଙ୍କ ପାଖରେ ଢାଳିଦେଇ ପକାଏ । ବ୍ୟବସାୟରେ ଲସ୍, ଗୃହସ୍ଥ ଜୀବନର ଦ୍ୱନ୍ଦ୍ୱ, ଏ ଦୁନିଆର morality ଓ humanity ସହିତ Materialistic world ର contradiction.

ମୋର ପ୍ରଶ୍ନ ଓ ତାଙ୍କର ଉତ୍ତର । ବୋଧ ହୁଏ ଶ୍ରୀକୃଷ୍ଣ କୁରୁକ୍ଷେତ୍ରରେ ଅର୍ଜ୍ଜୁନଙ୍କୁ ଏହା ଠାରୁ ପ୍ରାଞ୍ଜଳ ଭାବରେ ବୁଝାଇ ନଥିଲେ । କୌଣସି ସମସ୍ୟା ଓ ତାର ସମାଧାନ ଏବଂ ତାକୁ କଷ୍ଟ ପାଉଥିବା ଲୋକର sentiment ସହିତ relate କରିବାର କ୍ଷମତା ତାଙ୍କଠାରୁ କାହାରି ଅଧିକା ନଥିଲା । ତାପରେ ଆରମ୍ଭ ହୁଏ ଓଡ଼ିଶା, ଭାରତ, ପୃଥିବୀ, ବେଦାନ୍ତ, ପୂଜା, ଭଗବାନ, ମଣିଷ, revolution... ସେ କହିଚାଲନ୍ତି, ମୁଁ ପିଇ ଚାଲେ । ଦିନେ ନୁହେଁ, ମାସେ ନୁହେଁ, ବର୍ଷ ବର୍ଷ ଧରି ଚାଲେ ଆମର କଥା ।

ଦିନେ ରାତିରେ ଖାଇ ବସିଛି ହଠାତ୍ ଫୋନ ପାଇଲି ସେ ଆଉ ନାହାନ୍ତି । ସେଇଠୁ ଉଠିଲି । ପହଞ୍ଚିଲା ବେଳକୁ ତିନି ଘଣ୍ଟା ହେଲା ଗ୍ଭଲିଗଲେଣି । ଦେହ ସେମିତି ଗରମ ଥାଏ, ମୃତ୍ୟୁର କୌଣସି ଚିହ୍ନ ସେ ମୁହଁରେ ନଥାଏ । ଘରେ ଲୋକ ଭର୍ତ୍ତି, ସମସ୍ତେ ଦୁଃଖରେ ମ୍ରିୟମାଣ । ହେଲେ ମୋର ଦୁଃଖ କିଏ ବୁଝିବ ? ମୋ ଆତ୍ମାର ଅଧେ ସବୁଦିନ ପାଇଁ ଚାଲିଗଲା । ଯିଏ ମୋତେ ବୁଝାଇ ଥାନ୍ତେ, କହିଥାନ୍ତେ, "ଏତେ ବେଦାନ୍ତ ପଢୁଛ । ଆତ୍ମା କ'ଣ ମରେ ? ପୃଥିବୀ ଚାଲିଛି, ଚାଲିବ" - ସେ ନାହାନ୍ତି ।

ବହୁତ ଚିନ୍ତା କରିଛି, ବୋଧହୁଏ କୌଣସି ଯୋଗଭ୍ରଷ୍ଟ ଆତ୍ମା ନିଜର ବାକିଥିବା ବାସନା ପୂରଣ କରିବା ପାଇଁ ପୃଥିବୀରେ ଜନ୍ମ ହୋଇଥିଲେ । ପରବର୍ତ୍ତୀ ଜୀବନର ପ୍ରତି ମୁହୂର୍ତ୍ତରେ ତାଙ୍କର ଅନୁପସ୍ଥିତି ଅନୁଭବ କରିଛି । ସବୁବେଳେ ଲାଗେ - ଏଇ ସେ ତର ତର ହୋଇ ଡ୍ରଇଂ ରୁମ୍‌କୁ ପଶି ଆସିବେ, ସାମନା ଚେୟାରରେ ବସି ହସି ଦେଇ କହିବେ, "S.R. ଶୁଣ" ।

ଶହୀଦ ନଗର



# ମୋ ସ୍ମୃତିରେ ବୈକୁଣ୍ଠ ବିଶ୍ୱାଳ

*ଉପେନ୍ଦ୍ର ପ୍ରସାଦ ନାୟକ*

ମଣିଷର ଜନ୍ମ, ଜୀବନ ଓ ମୃତ୍ୟୁକଥା ଭାବିଲେ ବିସ୍ମୟ ଲାଗେ । କାହାର ସ୍ଥିତିକାଳ କେତେ, ଜାଣିବା ବାସ୍ତବିକ କଷ୍ଟ ସାପେକ୍ଷ । କିନ୍ତୁ ମଣିଷ ଅମର ନୁହେଁ । ଦିନେ ନା ଦିନେ ମୃତ୍ୟୁର ସିଂହଦ୍ୱାର ତା'ପାଇଁ ଖୋଲିଯିବ – ଏହା ଏକ ଚିରନ୍ତନ ସତ୍ୟ । କିନ୍ତୁ ମଣିଷ ତା'ର ଚିରନିଶ୍ଚିତ ମୃତ୍ୟୁର ସତ୍ୟଟିକୁ ଜାଣିମଧ୍ୟ ସେ ପାର୍ଥିବ ବସ୍ତୁ ତଥା ସ୍ୱାର୍ଥ ଓ ଅର୍ଥ ପଛରେ ଧାଇଁଥାଏ । ମଣିଷର ଜୀବନ ନିତ୍ୟନିଶ୍ଚିତ ନୁହେଁ – ଏହା ଭଲଭାବେ ଜାଣି ମଧ୍ୟ ସେ ହିଂସା, ଇର୍ଷା ଓ ଅପକାର ଚିନ୍ତାର ଧୁମ୍ରକୁହେଳୀ ଭିତରେ ଘୁରିବୁଲେ ।

ମଣିଷ ହାତରେ କିଛି ନଥାଏ । ନିୟତିର ଇଙ୍ଗିତରେ ମଣିଷକୁ ବାଟ ଗ୍ଭଲିବାକୁ ହୁଏ । କେତେବେଳେ ତାକୁ ସରଳ, ସମତଳ ପଥରେ ଯିବାକୁ ହୁଏ ତ ପୁଣି କେତେବେଳେ ସର୍ପିଳ ରାସ୍ତାରେ ଅଥବା କେବେ କଣ୍ଟକିତ ପଥ ଅତିକ୍ରମ କରିବାକୁ ହୋଇଥାଏ ।

ଏଇ ସତ୍ୟ କେବଳ ମୋ ପାଇଁ, ତୁମପାଇଁ, ତାଙ୍କ ପାଇଁ ବା ସେମାନଙ୍କ ପାଇଁ ନୁହେଁ, ଏହା ସଭିଙ୍କ ପାଇଁ ଅଭିପ୍ରେତ । ଏହି ପରିପ୍ରେକ୍ଷୀରେ ବୈକୁଣ୍ଠ ବିଶ୍ୱାଳଙ୍କର ଜୀବନ ଓ ମୃତ୍ୟୁ କଥା ଭାବିଲେ ବିଷଣ୍ଣତାରେ ଭରିଯାଏ ମନ । ସ୍ୱର୍ଗତ ବୈକୁଣ୍ଠ ବିଶ୍ୱାଳ ଏକ ପ୍ରତିଭାସମ୍ପନ୍ନ ଜୀବନ ଯାପନ କରି ଏମିତି ଯେ ଅକାଳରେ ମୃତ୍ୟୁବରଣ କରିବେ, ଭାବିଲେ

ବିଶ୍ୱାସ କରିହୁଏ ନାହିଁ । ତାଙ୍କ ସହିତ ଅନେକ ସ୍ମୃତି ବିଜଡ଼ିତ ଅଧ୍ୟାୟ ଏବେ ବି ଆଖି ଆଗରେ ଭାସିଯାଏ । ବୈକୁଣ୍ଠ ବାବୁଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା ଭଦ୍ରକ ମହାବିଦ୍ୟାଳୟରେ, ପ୍ରାକ୍ ବିଶ୍ୱ ବିଦ୍ୟାଳୟ ବିଜ୍ଞାନ ଶ୍ରେଣୀରେ କଲେଜ ପାଠ ଆରମ୍ଭ କଲାବେଳେ ।

୧୯୬୭ ମସିହାରେ ମୁଁ ଆମ ଗାଁ ଜଗନ୍ନାଥ ପ୍ରସାଦ ହାଇସ୍କୁଲରୁ ପ୍ରଥମ ଶ୍ରେଣୀରେ ପାସ୍‌କରି ଭଦ୍ରକ ମହାବିଦ୍ୟାଳୟରେ ନାମ ଲେଖାଇଲି । ବୈକୁଣ୍ଠ ବାବୁ ମଧ୍ୟ ସେଇବର୍ଷ ମୋଠୁ ଯଥେଷ୍ଟ ଅଧିକ ନମ୍ବର ରଖି ସେହି ଭଦ୍ରକ ମହାବିଦ୍ୟାଳୟରେ ବିଜ୍ଞାନରେ ନାମ ଲେଖାଇଲେ । ମୋର ବାଇଓଲୋଜି ଥିଲା ତାଙ୍କର ନଥିଲା । ତେଣୁ ତାଙ୍କର ଏ' ସେକ୍ସନ୍ ଥିଲାବେଳେ ମୋର ବି' ସେକ୍ସନ୍ ଥିଲା । ତେଣୁ ଶ୍ରେଣୀଗୃହରେ ପ୍ରତିଦିନ ତାଙ୍କ ସହିତ ଦେଖା ହେବାର ସୁଯୋଗ ନଥିଲା । କିନ୍ତୁ ସେ ମୋର ଅନ୍ୟତମ ଦୂର ସମ୍ପର୍କୀୟ ଥିଲେ । ସେ ଥିଲେ ମୋର ଜଣେ ପିଉସୀ ଝିଅ ଭଉଣୀର ଦିଅର । ସେ କଲେଜକୁ ପଢ଼ିବାକୁ ଆସିଲାବେଳେ ମୋ ସହିତ ଦେଖା କରିବାକୁ ମୋର ସେ ଭଉଣୀ – 'ବୃନ୍ଦାଦେଈ' - ତାଙ୍କୁ ବାରମ୍ବାର ତାଗିଦ୍ କରି କହିଥିଲେ । କିନ୍ତୁ କଲେଜ୍‌ରେ ପଢ଼ିବାର କିଛିଦିନ ପର୍ଯ୍ୟନ୍ତ ମୋ ସହିତ ତାଙ୍କର ସାକ୍ଷାତ ନ ହେବାରୁ କଲେଜ୍ ନୋଟିସ୍ ବୋର୍ଡ଼ ପାଖରେ ସେ ମତେ ଦେଖା କରିବାକୁ ଚାହାନ୍ତି ବୋଲି ଏକ ବିଜ୍ଞପ୍ତି ଲଗାଇ ଦେଇଥିଲେ ।

ସେ ବିଜ୍ଞପ୍ତି ପଢ଼ି ମୁଁ ତାଙ୍କୁ ସାକ୍ଷାତ କଲି ଏବଂ ଆମର ବନ୍ଧୁତା ବଢ଼ିଲା । ସେତେବେଳେ ଭଦ୍ରକ ମହାବିଦ୍ୟାଳୟ ଓଡ଼ିଶାରେ ପାଠପଢ଼ା କ୍ଷେତ୍ରରେ ବିଶେଷ ସୁନାମ ଅର୍ଜନ କରିଥିଲା । ରେଭେନ୍‌ସା ମହାବିଦ୍ୟାଳୟ ପରେ ଭଦ୍ରକ ମହାବିଦ୍ୟାଳୟ ପ୍ରତି ଛାତ୍ରଛାତ୍ରୀ ମାନଙ୍କର ବିଶେଷ ଆକର୍ଷଣ ଥିଲା । ତେଣୁ ଏଇ ଶିକ୍ଷାନୁଷ୍ଠାନରେ ପଢ଼ିବାକୁ ଛାତ୍ରଛାତ୍ରୀମାନେ ଆଗଭର ହୋଇ ଆସୁଥିଲେ ।

ବୈକୁଣ୍ଠବାବୁ ଓ ମୁଁ କେବଳ ଯେ ଗୋଟିଏ ଶିକ୍ଷାୟତନ ଭିତରେ ଆବଦ୍ଧ ଥିଲୁ, ତା ନୁହେଁ । ତାଙ୍କ ଜୀବନଧାରା ସହିତ ମୋ ଜୀବନଧାରାର ବହୁତ କିଛି ସାଦୃଶ୍ୟ ଥିଲା । ଉଭୟ ଛାତ୍ର ରାଜନୀତିରେ ଭାଗ ନେଇଥିଲୁ । ଉଭୟଙ୍କର ସାହିତ୍ୟ ପ୍ରତି ବିଶେଷ ଆଗ୍ରହ ତଥା ଆକର୍ଷଣ ଥିଲା । ଉଭୟ କବିତା ଲେଖୁଥିଲୁ । ଉଭୟ ଭଲ ପାଠ ପଢୁଥିଲୁ । ହାଇସ୍କୁଲ ପରୀକ୍ଷାରେ ଉଭୟ ପ୍ରଥମ ଶ୍ରେଣୀରେ କୃତକାର୍ଯ୍ୟ ହୋଇଥିଲୁ । କିନ୍ତୁ ପ୍ରଭେଦ ଏତିକି ଥିଲା ଯେ ସେ ବାମପନ୍ଥୀ ଚିନ୍ତାଧାରାରେ ବିଶ୍ୱାସ କରୁଥିଲେ ଏବଂ ତାଙ୍କ କବିତାରୁ ଫୁଟି ଉଠୁଥିଲା ବିପ୍ଳବର ସ୍ୱର । ମୁଁ କିନ୍ତୁ ଲେଖୁଥିଲି ମାନବବାଦୀ କବିତା ସହିତ ପ୍ରକୃତି ବନ୍ଦନା ଏବଂ ଅନେକ ରୋମାଣ୍ଟିକ୍ କବିତା । ସେ ଛାତ୍ର ଫେଡେରେସନ୍‌ର ସଭ୍ୟ ଥିଲାବେଳେ ମୁଁ ଥିଲି ଇଉନିୟନ୍‌ର ସକ୍ରୀୟ ସଭ୍ୟ ।

ସମୟର ପ୍ରବାହରେ ଜୀବନ ଆଗେଇ ଚାଲିଲା । ମୁଁ ଭଦ୍ରକ କଲେଜ ଛାଡ଼ି କଲିକତାରେ ଡାକ୍ତରୀ ପାଠ ପଢ଼ିଲି ଏବଂ ସେ ଭଦ୍ରକରୁ ପାଠପଢ଼ା ସାରି ଦିଲ୍ଲୀରେ ପଢ଼ିଲେ ।

କିନ୍ତୁ କର୍ମମୟ ଜୀବନରେ ଉଭୟ ଭୁବନେଶ୍ୱରରେ ରହିଲୁ । ମୁଁ ଗୋଟିଏ ସରକାରୀ ଚାକିରୀରେ ମୁତୟନ ହୋଇ ମୋର ଅଧ୍ୟାପନା ଓ ଚିକିତ୍ସା ବେଉସାରେ ବ୍ୟସ୍ତ ଥିବାବେଳେ ସେ ସ୍ୱାଧୀନ ଭାବରେ ଏକ ସମ୍ବାଦପତ୍ର ପ୍ରକାଶନର ଅୟମାରମ୍ଭ କଲେ । କିନ୍ତୁ ଦୁଃଖର କଥା, ତାଙ୍କ ଦ୍ୱାରା ପ୍ରକାଶିତ ସେ ସମ୍ବାଦପତ୍ର (ଲୋକାଗ୍ରର) ବେଶୀଦିନ ବଞ୍ଚି ରହିପାରିଲା ନାହିଁ ।

ମୁଁ ସରକାରୀ ଚାକିରୀରେ ଥିଲେ ମଧ୍ୟ ସାହିତ୍ୟକୁ ଛାଡ଼ି ପାରି ନ ଥିଲି । ବୈକୁଣ୍ଠବାବୁ ମଧ୍ୟ ସ୍ୱାଧୀନ ଭାବରେ ଜୀବନ ଯାପନ କରି ସାହିତ୍ୟ, ସାମ୍ବାଦିକତା, ରାଜନୀତି ଏବଂ ଜନସେବା କାର୍ଯ୍ୟରେ ନିଜକୁ ବ୍ୟସ୍ତ ରଖୁଥିଲେ । ବୈକୁଣ୍ଠ ପାଠ ପଢୁଥିବାବେଳେ ତାଙ୍କର ପ୍ରତିଭା ଓ ମେଧାବୀ ଗୁଣରୁ ସୂଚିତ ହେଉଥିଲା ଯେ ଭବିଷ୍ୟତରେ ସେ ଜଣେ ବଡ଼ ପ୍ରଶାସକ ବା ଉଚ୍ଚ ପଦାଧିକାରୀ ହେବେ । କିନ୍ତୁ ପ୍ରକୃତରେ ସେ ବୋଧହୁଏ ସରକାରୀ ଚାକିରୀକୁ ଘୃଣା କରୁଥିଲେ । ତେଣୁ ଚାକିରୀଠାରୁ ଦୂରରେ ରହି ସ୍ୱାଧୀନ ଜୀବନ ଯାପନ କଲେ ।

ଆଜି ବୈକୁଣ୍ଠବାବୁଙ୍କ କଥା ଭାବିଲାବେଳକୁ ଆଉ ଏକ ସ୍ମୃତି ମୋର ସ୍ମରଣକୁ ଆସୁଛି । ଯାଜପୁରର କୁଆଖିଆ ନିକଟସ୍ଥ ବ୍ରହ୍ମବରଦା ଠାରେ 'ନବୀନ ବିଶ୍ୱ ସଂଗଠନ' ପକ୍ଷରୁ ଆୟୋଜିତ ଏକ ସାହିତ୍ୟ ସଭାରେ ବୈକୁଣ୍ଠବାବୁ, ମୁଁ ଓ ବିଖ୍ୟାତ ବିପ୍ଳବୀ କବି ମନମୋହନ ମିଶ୍ର ଅତିଥିଭାବେ ଯୋଗଦାନ କରିଥିଲୁ । ମୋର ବକ୍ତବ୍ୟ ତାଙ୍କ ଭାଷଣ ପୂର୍ବରୁ ନିର୍ଦ୍ଧାରିତ ଥିଲା । ମୋର ଭାଷଣରେ ସେ ସନ୍ତୋଷ ଲାଭ କରିଛନ୍ତି ବୋଲି ତାଙ୍କ ଭାଷଣରେ ସ୍ୱୀକାର କରିଥିଲେ ମଧ୍ୟ ମୋ ବକ୍ତବ୍ୟ ଉପରେ କେତେକ ବିରୋଧ ମତ ପ୍ରକାଶ କରିଥିଲେ । ମୁଁ ସାଧାରଣ ଜନ ଜୀବନର କଥା ଏବଂ ଜୀବନବାଦର ତତ୍ତ୍ୱ ଓ ତଥ୍ୟ ଉପରେ ମୋର ବକ୍ତବ୍ୟ ଉପସ୍ଥାପନ କରିଥିବାବେଳେ ସେ ପ୍ରଗତିବାଦୀ ଚିନ୍ତାଧାରାର ସ୍ୱର ଉତ୍ତୋଳନ କରିଥିଲେ ।

ବୈକୁଣ୍ଠବାବୁ ଥିଲେ ଜଣେ ମଣିଷ ପ୍ରେମୀ, ସର୍ବହରା ମଣିଷର ସାଥୀ । ସାମ୍ପ୍ରତିକ ସମାଜର ଶୋଷଣ, କଷଣ, ଶ୍ରେଣୀ ବ୍ୟବସ୍ଥା ବିରୁଦ୍ଧରେ ସେ ଦୃଢ଼ ଭାବରେ ସ୍ୱର ଉତ୍ତୋଳନ କରି ପାରୁଥିଲେ । କିନ୍ତୁ ଦୁଃଖର କଥା, ତାଙ୍କ ଜୀବନର ବହୁ ସ୍ୱପ୍ନ ଓ ଅନେକ ଅଧୁରା କାର୍ଯ୍ୟ ପୂର୍ଣ୍ଣ କରିବା ପୂର୍ବରୁ ସେ ଅକାଳରେ ଇହଧାମ ପରିତ୍ୟାଗ କରି ଚାଲିଗଲେ । ତାଙ୍କର ଚିନ୍ତାଚେତନାକୁ ବଳବତ୍ତର ରଖି ତାଙ୍କ ଅଧୁରା କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବାକୁ ତାଙ୍କର ଯୋଗ୍ୟପୁତ୍ର ଚିନ୍ମୟ ଓ କନ୍ୟା ଚେତନାକୁ ଇଶ୍ୱର ଯଥେଷ୍ଟ ଶକ୍ତି ଓ ସାହସ ଦିଅନ୍ତୁ, ଏହାହିଁ ମୋର କାମନା ।

ପ୍ରଫେସର, ଅଭିନ୍ନଚନ୍ଦ୍ର ରାଓ ହୋମିଓପାଥି ମହାବିଦ୍ୟାଳୟ
ଡି ୯/୩, ୟୁନିଟ୍-୯ ଫ୍ଲାଟ୍, ଭୁବନେଶ୍ୱର



# ଜଣେ ସ୍ୱାଭିମାନୀ ସାମ୍ବାଦିକ

*ଅଶୋକ ମହାନ୍ତି*

ଉଣେଇଶ ଶହ ଅଣାଅଶି ମସିହା ମଇ ମାସ । ତାରିଖ ମନେ ପଡୁନଥିଲେ ବି ସେଦିନ ଅପରାହ୍ନରେ ପାଇଥିବା ଇନ୍‌ଲାଣ୍ଡ ଲେଟରଟିର ପ୍ରତିଟି ଶବ୍ଦ/ଅକ୍ଷର ଏବେ ବି ମୋର ଦୃଶ୍ୟମାନ । ୨/୩ ଧାଡ଼ିର ଏହି ଚିଠି ଯେ ମୋ ଜୀବନରେ ଏକ ନାଟକୀୟ ପରିବର୍ତ୍ତନ ଆଣିଦେବ କିଏ ଜାଣିଥିଲା ! ଚିଠିଟି ଥିଲା ସ୍ୱର୍ଗତଃ ବୈକୁଣ୍ଠ ବିଶ୍ୱାଳଙ୍କ ସ୍ୱହସ୍ତ ଲିଖିତ । ସେଥିରେ ଥିଲା ଏକ ଆଦେଶ ମିଶ୍ରିତ ଅନୁରୋଧ – ଲୋକାଗ୍ରହ ପରିବାରଭୁକ୍ତ ହେବା ନିମନ୍ତେ ।

ସେତେବେଳେ ବୈକୁଣ୍ଠ ବିଶ୍ୱାଳଙ୍କ ସମ୍ପାଦନାରେ ସାପ୍ତାହିକ "ଲୋକାଗ୍ରହ" ପ୍ରକାଶ ପାଉଥାଏ । ରଙ୍ଗୀନ୍ ସାପ୍ତାହିକ ଓଡ଼ିଶାରେ ନଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ହେଡ଼ିଂ ଗୁଡ଼ିକ ଚିରାଚରିତ ଅକ୍ଷରରେ ନହୋଇ ପ୍ରଖ୍ୟାତ ଚିତ୍ରଶିଳ୍ପୀ ଉଦୟ ଜେନାଙ୍କ ଦ୍ୱାରା ଲିଖିତ ଓ ସତ୍ୟନାରାୟଣ ପ୍ରେସ୍‌ରେ ତିଆରି ବ୍ଲକ୍ ଯୋଗୁଁ ଲୋକାଗ୍ରହର ମୁଦ୍ରଣର ସ୍ୱାତନ୍ତ୍ର୍ୟ ରହିଥିଲା ସେତେବେଳେ । ନିଜସ୍ୱ ମୁଦ୍ରଣ ସଂସ୍ଥା Script Engravers ରୁ "ଲୋକାଗ୍ରହ" ପ୍ରକାଶ ପାଉଥାଏ । ଲୋକାଗ୍ରହର ପ୍ରକାଶନରେ ପ୍ରକାଶକ ଅନ୍ତର୍ଯ୍ୟାମୀ ସ୍ୱାଇଁଙ୍କୁ ସାହାଯ୍ୟ କରିବା ସହ ପ୍ରେସ୍‌ର ପରିଚାଳକ ଭାବେ ଦାୟିତ୍ୱ ନେବାକୁ ଚିଠିରେ ମୋତେ ନିର୍ଦ୍ଦେଶ ଥିଲା । ଏହାଥିଲା ମୋ ପାଇଁ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ । ଛପାଖାନା, ପତ୍ରପତ୍ରିକା ବିଷୟରେ ମୋର ସାମାନ୍ୟତମ ଜ୍ଞାନ ନଥିଲା ସେତେବେଳେ । ତଥାପି ଚିଠିଟିକୁ ଏକ ଚ୍ୟାଲେଞ୍ଜ୍ ଭାବେ ଗ୍ରହଣ କରି ଯୋଗଦେଲି ଲୋକାଗ୍ରହ ପରିବାରରେ ।

ସେତେବେଳେ "ଲୋକାଗ୍ରହ" ଥିଲା ଅନେକ ବିପ୍ଳବୀ, କବି, ଲେଖକ ଓ ସାମ୍ବାଦିକଙ୍କର କର୍ମସ୍ଥଳୀ । ଓଡ଼ିଶାର ଅନେକ ଉତ୍ତୁଙ୍ଗ ବ୍ୟକ୍ତିତ୍ୱଙ୍କୁ ଅତି ନିକଟରୁ ମୁଁ ଦେଖିବାର ସୌଭାଗ୍ୟ କେବଳ ସେଇଠି ପାଇଥିଲି । ପ୍ରେସ୍ ପରିଚାଳନାରେ ସମ୍ପୂର୍ଣ୍ଣ ନୂଆ ହେଲେ ମଧ୍ୟ ଅନ୍ତର୍ଯ୍ୟାମୀ ବାବୁଙ୍କ ସାହାଯ୍ୟ ସହଯୋଗ ଓ ବୈକୁଣ୍ଠ ଭାଇଙ୍କ ପ୍ରେରଣା ମୋତେ ମୁଦ୍ରଣ ସମ୍ବନ୍ଧୀୟ ଅନେକ ଜ୍ଞାନ ଆହରଣ କରିବାରେ ସାହାଯ୍ୟ କରିଥିଲା, ଯାହାର ଉପଯୋଗୀତା ବର୍ତ୍ତମାନ ସୁଦ୍ଧା ମୁଁ ଉପଲବ୍ଧି କରିପାରୁଛି । ସେହି ବୈଷୟିକ ଜ୍ଞାନ ଯୋଗୁଁ ଆଜି ମୋର ଅନ୍ନ ସଂସ୍ଥାନ ଓ ପରିବାର ପ୍ରତିପୋଷଣ ହୋଇ ପାରୁଛି ।

ବୈକୁଣ୍ଠ ବିଶ୍ୱାଳ । ଏହି ନାମରେ ପ୍ରକାଶ ପାଉଥିବା ଲେଖାଗୁଡ଼ିକ ଠାରୁ ଢ଼େର ବେଶୀ ଲେଖା ସେ ଲେଖୁଥିଲେ ଛଦ୍ମନାମରେ । ସେ ଥିଲେ ଜଣେ ସ୍ୱୟଂସମ୍ପୂର୍ଣ୍ଣ ସାମ୍ବାଦିକ । ବଳିଷ୍ଠ ଲେଖନୀ ତାଙ୍କ ଲେଖାକୁ କରିଥିଲା ଋଦ୍ଧିମନ୍ତ । ସେ ସମୟରେ ତାଙ୍କର ଲେଖା ଆଲୋଡ଼ନ ସୃଷ୍ଟି କରୁଥିଲା ଓ ସମସାମୟିକ ସାମ୍ବାଦିକ ମହଲରେ ତାଙ୍କର ଏକ ସ୍ୱତନ୍ତ୍ର ପରିଚିତିଥିଲା । ସେ ଥିଲେ ନମ୍ର, ଉଦାର ତଥା ମିଷ୍ଟଭାଷୀ । ଅହଂକାରଶୂନ୍ୟ ବ୍ୟକ୍ତିତ୍ୱ

ହେଲେ ବି ସେ ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ । ସର୍ବଦା ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିବାକୁ ସେ ଚେଷ୍ଟା କରୁଥିଲେ । ହୁଏତ ଅନେକ ଜାଣିନଥିବେ ଯେ ରାମନାଥ ପଣ୍ଡାଙ୍କ ଅବ୍ୟାହତି ପରେ ଦୈନିକ 'ଧରିତ୍ରୀ'ର ସମ୍ପାଦକ ଭାବେ ଯୋଗଦେବା ପାଇଁ ଆସିଥିବା ଅନୁରୋଧକୁ ସେ ନମ୍ରତାର ସହ ପ୍ରତ୍ୟାଖ୍ୟାନ କରିଥିଲେ । ସେ ଚାହୁଁଥିଲେ ସାମ୍ବାଦିକତା କ୍ଷେତ୍ରରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ, କିନ୍ତୁ ଅର୍ଥାଭାବ ଥିଲା ତାଙ୍କର ମୁଖ୍ୟ ପ୍ରତିବନ୍ଧକ । ଯାହା ପାଇଁ ଅନେକ ସମୟରେ ସେ ଉଦାସ ରହୁଥିଲେ ।

ଜଣେ ସହକର୍ମୀଭାବେ କାର୍ଯ୍ୟ ଆରମ୍ଭ କରି ମୁଁ ହୋଇ ପାରିଥିଲି ତାଙ୍କ ପରିବାରର ଜଣେ ସଦସ୍ୟ । ମୁଁ ଅନେକ ଭାବେ ତାଙ୍କ ଦ୍ୱାରା ଓ ତାଙ୍କ ପରିବାର ଦ୍ୱାରା ଉପକୃତ । ସେ ଆଜି ଆମ ଗହଣରେ ନାହାନ୍ତି । ଅନେକ ଦିନ ତଳୁ ଆମମାନଙ୍କୁ ଛାଡ଼ି ସେ ଅମର ଧାମର ଯାତ୍ରୀ ହୋଇ ଯାଇଛନ୍ତି । ସେ ଯେଉଁଠି ଥା'ନ୍ତୁ ନା କାହିଁକି ତାଙ୍କର କରୁଣାର ଆଶିଷ ତାଙ୍କ ପୁତ୍ର କନ୍ୟାଙ୍କ ଉପରେ ସର୍ବଦା ଝରୁଥାଉ ଓ ସେ ଶକ୍ତି ପ୍ରଦାନ କରନ୍ତୁ ଭାଉଜଙ୍କୁ ତାଙ୍କ ପରବର୍ତ୍ତୀ ପିଢ଼ିକୁ ଉଚିତ୍ ମାର୍ଗ ଦର୍ଶନ କରାଇବାକୁ । ଏହା ହିଁ ମୋର ଏକାନ୍ତ କାମନା ।

'ସମ୍ବାଦ', ଭୁବନେଶ୍ୱର



# ବୈକୁଣ୍ଠ ବାବୁଙ୍କ ସ୍ମରଣେ

***ବିଭୁ ପ୍ରସାଦ ତ୍ରିପାଠୀ***

ଓଡ଼ିଆ ଦୈନିକ 'ନବପ୍ରଭାତ' ଓ 'ପ୍ରଭାତ ଜ୍ୟୋତି' ଦୁଇଟି ସମ୍ବାଦପତ୍ରର ରସୁଲଗଡ଼ରେ ଅଫିସ୍ । ସାମାଜିକ ସମସ୍ୟାକୁ ବୁଝିବା ପାଇଁ ଚେଷ୍ଟା କରୁଥିବା ଓ ସମ୍ବାଦପତ୍ରରେ ଲେଖାଲେଖି କରିବାକୁ ଆଗ୍ରହୀଥିବା ଏହି ଲେଖକଟିର ସେତେବେଳେ ୯୦ ମସିହାରେ ଦେଖାହୁଏ ବୈକୁଣ୍ଠ ବାବୁଙ୍କ ସହିତ । ଦାରିଦ୍ର୍ୟର କଷାଘାତରେ ଜର୍ଜରିତ ମନ ଭିତରେ ପ୍ରବଳ ପ୍ରତିକ୍ରିୟା ଥାଏ । ମନ ଅନ୍ଧାର ଭିତରେ ଅଣ୍ଟାଳି ହେଉଥାଏ । ସ୍ନାତକ ଶ୍ରେଣୀର ଶେଷବର୍ଷର ଛାତ୍ର ହିସାବରେ ରାଜନୀତି ବିଜ୍ଞାନର ତତ୍ତ୍ୱ ପଢ଼ିବା ଅପେକ୍ଷା ରାଜ୍ୟର ପ୍ରଗତିଶୀଳ ଲେଖକ, ବୁଦ୍ଧିଜୀବିଙ୍କ ସହିତ ଆଲୋଚନା କରି ଶିଖିବା ପାଇଁ ମନ ଭିତରେ ଥାଏ ପ୍ରବଳ ଆଗ୍ରହ । ଚାଲି ଚାଲି ଷ୍ଟେସନ୍ ଛକରୁ ବେଳେବେଳେ ପହଞ୍ଚିଯାଏ ରସୁଲଗଡ଼ର ସେହି ଟିଣଘର ପ୍ରେସ୍ ଭିତରେ । ବୈକୁଣ୍ଠବାବୁଙ୍କ ସମ୍ପର୍କରେ ଅନ୍ୟମାନଙ୍କ ଠାରୁ ଶୁଣିଥାଏ ଜଣେ ପ୍ରଚଣ୍ଡ ପ୍ରତିଭାସମ୍ପନ୍ନ ବ୍ୟକ୍ତିତ୍ୱର ତଥାକଥିତ ବିକାଶ କିଭଳି ହୋଇପାରିଲା ନାହିଁ ଏ ରାଜ୍ୟରେ । ନିଜର ଆଚରଣରେ ଅନ୍ୟମାନଙ୍କ ପାଇଁ ଉଦାହରଣ ସୃଷ୍ଟି କରିଥିବା ବୈକୁଣ୍ଠବାବୁ ପ୍ରଥମ ଦିନରେ କଲେ ତିନିଘଣ୍ଟାରୁ ଅଧିକ ଆଲୋଚନା । ରାଜ୍ୟର ରାଜନୀତି ଠାରୁ ଆରମ୍ଭ କରି ସମ୍ବାଦପତ୍ରରେ ଲେଖାଲେଖି କରିବା ଓ ସେଥିରେ ଜୀବନ ବିତାଇବାରେ

ମନ ଭିତରେ ଥିବା କ୍ଷୋଭ, ଆଶା ଓ ଆଶଙ୍କାକୁ ସେଦିନ ମୋ ଭଳି ଜଣେ ୨୦ବର୍ଷ ବୟସର ଯୁବକ ଆଗରେ ସେ ଯେଉଁ ଭାବରେ ଉପସ୍ଥାପିତ କଲେ, ତାହା ମୋ ଭିତରେ ଏଯାବତ୍ ଏକ ନୂଆ ଚିନ୍ତାଚେତନାର ଉଦ୍ରେକ କରାଇଥିଲା । ରାଜ୍ୟର ପ୍ରମୁଖ ରାଜନୈତିକ ଦଳ ଗୁଡ଼ିକର ରାଜନେତାମାନେ ଥିଲେ ବୈକୁଣ୍ଠ ବାବୁଙ୍କ ପ୍ରତିଭାର ପ୍ରଶଂସକ । ଅନେକ ସମୟରେ ସେହି ଗିଣଘରେ ବସି ସଂଧ୍ୟା ପର୍ଯ୍ୟନ୍ତ ଆଲୋଚନା ଚାଲେ । ପୁରୀ ଫେରିବାକୁ ଥିବାରୁ ପୁଣି ଫେରିଆସି ଟ୍ରେନ୍ ଧରିବାକୁ ପଡ଼େ । ତେଣୁ ଆଲୋଚନା ମଝିରୁ ମୁଁ କ୍ଷମା ମାଗି ଫେରି ଆସେ । "ନବପ୍ରଭାତ" ଓ "ପ୍ରଭାତ ଜ୍ୟୋତି" ଖବରକାଗଜ ଦୁଇଟି ଠିକ୍ ସମୟରେ ଛପା ହୋଇପାରୁନଥିଲା କାରଣ ଏହି ଦୁଇ ସମ୍ବାଦପତ୍ରର ସମ୍ପାଦକ ବୈକୁଣ୍ଠ ବିଶ୍ୱାଳ ଓ ବାସୁଦେବ ମଲ୍ଲିକ ସମ୍ବାଦପତ୍ରକୁ ନେଇ ରାଜନୀତି କରିବା କିମ୍ବା ଅର୍ଥ ରୋଜଗାର କରିବା ପାଇଁ ସମ୍ବାଦପତ୍ର ଛାପୁନଥିଲେ । ସେମାନଙ୍କ ସମ୍ବାଦପତ୍ରର ଥିଲେ ସ୍ୱତନ୍ତ୍ର ଗ୍ରାହକ । ନିଜ ଘରୁ ଟଙ୍କାଆଣି, ଘରର ଆତ୍ମୀୟ ସ୍ୱଜନଙ୍କ ଅର୍ଥରୁ ସମ୍ବାଦପତ୍ର ଚଳାଇବାର ନିଶା ଘାରିଥିଲା ଏହି ଦୁଇ ସମ୍ବାଦପତ୍ରର ସମ୍ପାଦକଙ୍କୁ । ସମ୍ବାଦପତ୍ର ପ୍ରକାଶନ କରିବା ଥିଲା ଏମାନଙ୍କ ଜୀବନ କିନ୍ତୁ ଜୀବିକା ନୁହେଁ, ନିଶା କିନ୍ତୁ ପେଷା ନୁହେଁ । ଗଣତନ୍ତ୍ରର ଖୋଳ ଭିତରେ ଚତୁର୍ଥ ସ୍ତମ୍ଭର ଡିଣ୍ଡିମ ପିଟୁଥିବା ସାମ୍ବାଦିକମାନଙ୍କ ଠାରୁ ଏ ଦୁହେଁ ଥିଲେ ନିଆରା ମଣିଷ ।

୧୯୯୧ ମସିହାରେ ମୁଁ ଚାଲିଯାଏ ଦିଲ୍ଲୀ ବିଶ୍ୱବିଦ୍ୟାଳୟକୁ ଆଇନ୍ ପଢ଼ିବା ପାଇଁ । ସେଠାରୁ ଆରମ୍ଭ କରେ ମୋର ଓକିଲାତି ପେଶା ଦିଲ୍ଲୀରେ । ବୈକୁଣ୍ଠ ବାବୁଙ୍କ ସହ ସମ୍ପର୍କର ସେତୁ କଟିଯାଏ । ଫେରିବା ବେଳେ ୨୦୦୨ ମସିହାରେ ଦେଖାହୁଏ ବାସୁ ଭାଇଙ୍କ ସହିତ । ପଚାରିବୁଝେ ମୋର ଶୁଭେଚ୍ଛୁ ଶୁଭାକାଂକ୍ଷୀ ମାନଙ୍କ ସମ୍ପର୍କରେ । ବାସୁଭାଇଙ୍କ ଠାରୁ ଶୁଣେ ବୈକୁଣ୍ଠ ବାବୁ ଚାଲିଯିବା ସମ୍ପର୍କରେ । ମୋ ଜୀବନ ଇତିହାସ ପୃଷ୍ଠାରେ ବୈକୁଣ୍ଠ ବାବୁ ନିଶ୍ଚୟ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିନେଇଛନ୍ତି ।

ଆଇନ୍‌ଜୀବି, ଓଡ଼ିଶା ହାଇକୋର୍ଟ



# ନବ ପ୍ରଭାତର ସାଥୀ

**ଚିତ୍ତରଞ୍ଜନ ବାରିକ**

୧୯୬୭ ମସିହାରେ ଭାରତବର୍ଷର ରାଜନୈତିକ ଇତିହାସରେ ଏକ ନୂତନ ଦିଗନ୍ତ ସୃଷ୍ଟି ହୁଏ । ତଥାକଥିତ ସ୍ୱାଧୀନତା ପ୍ରାପ୍ତି ପରଠାରୁ ଏ ଦେଶରେ ବ୍ରିଟିଶ ସାମ୍ରାଜ୍ୟବାଦର ପ୍ରତ୍ୟକ୍ଷ ଶାସନ ପରିବର୍ତ୍ତେ ଗଣତନ୍ତ୍ରର ନାମଧରି ଦେଶୀୟ ସାମ୍ରାଜ୍ୟବାଦୀ ଭକ୍ତ ଓ ସେବକ ମାନଙ୍କୁ କ୍ଷମତା ଅର୍ପଣ କରାଯାଏ । ସେମାନେ ଲୋକ ପ୍ରତିନିଧି ହୋଇ ସାମ୍ରାଜ୍ୟବାଦର ବହୁ ଦେଶୀୟ କମ୍ପାନୀମାନଙ୍କ ସ୍ୱାର୍ଥରକ୍ଷା କରି ଶାସନ ଚଳାଇ ଆସୁଥିଲେ । କିନ୍ତୁ ୧୯୬୭

ମସିହାରେ ଶ୍ରେଣୀ ସଂଗ୍ରାମର ବହ୍ନି ଯେତେବେଳେ ମେହେନତି ଖଟିଖିଆ ମଣିଷକୁ ନକ୍ସଲବାଡ଼ି ଆନ୍ଦୋଳନ ପାଇଁ ଆକର୍ଷିତ କଲା, ସେତେବେଳେ ସମଗ୍ର ଦେଶରେ ଛାତ୍ର, ଶିକ୍ଷକ, କୃଷକ, ଶ୍ରମିକ ଓ ବୁଦ୍ଧିଜୀବି ମହଲରେ ଏକ ନୂତନ ଚିନ୍ତାଧାରା ଉଦ୍ରେକ କଲା । ଠିକ୍ ଏହି ସମୟରେ ମାର୍କ୍ସୀୟ ଚିନ୍ତାଧାରାରେ ପ୍ରଭାବିତ ସଂଗ୍ରାମୀ ଛାତ୍ରନେତା ଭାବରେ ଭଦ୍ରକ କଲେଜର ଛାତ୍ରନେତା ବନ୍ଧୁ ବୈକୁଣ୍ଠ ବିଶ୍ୱାଳଙ୍କ ଏହି ଆନ୍ଦୋଳନର ନେତୃତ୍ୱ, ସ୍ଥାନୀୟ ଅଞ୍ଚଳରେ ପ୍ରଭାବ ପକାଇବା ସହ ସଂଗଠନ ତଥା ଆନ୍ଦୋଳନକୁ ମଜବୁତ କରିବା ପାଇଁ ଭିତ୍ତି ସ୍ଥାପନ କରିଥିଲା ।

ପରବର୍ତ୍ତି ସମୟରେ ସତୁରୀ ଦଶକରେ ଯେତେବେଳେ କଲିକତାର ଯୁବଛାତ୍ର ଆନ୍ଦୋଳନରେ ମୁଁ ସାମିଲ୍ ଥାଏ, ସେତେବେଳେ ଏକ ଗଣ ଆନ୍ଦୋଳନ ସଭାରେ ଦେଖା ସାକ୍ଷାତ ହୁଏ ବୈକୁଣ୍ଠ ବିଶ୍ୱାଳଙ୍କ ସହିତ । ସେଠାରେ ଉଭୟଙ୍କ ମଧ୍ୟରେ ପରିଚୟ ପର୍ବରେ ପରସ୍ପର ମଧ୍ୟରେ ଆରମ୍ଭ ହୁଏ ସମଚିନ୍ତାଧାରାର କାର୍ଯ୍ୟକ୍ରମ । ଏହାର କିଛିଦିନ ପରେ ମୁଁ କଲିକତାରୁ ପ୍ରତ୍ୟାବର୍ତ୍ତନ କରେ ମୋର ଗାଁ ମାଟି ବୟାଳିଶ ମୌଜାସ୍ଥ ବ୍ରହ୍ମପୁର ଗ୍ରାମକୁ । ବନ୍ଧୁ ବୈକୁଣ୍ଠ ବାବୁ ଅର୍ଥଶାସ୍ତ୍ର ଅଧ୍ୟୟନ କରିବା ପାଇଁ ଦିଲ୍ଲୀ ଯାଆନ୍ତି । ସେଠାରେ ସେ ସର୍ବଭାରତୀୟ ଛାତ୍ର ନେତା ଭାବରେ ଛାତ୍ର ଆନ୍ଦୋଳନରେ ନେତୃତ୍ୱ ନେଇ ବିଭିନ୍ନ ଆନ୍ଦୋଳନରେ ସାମିଲ୍ ହୁଅନ୍ତି । ମୋ ସହିତ ତାଙ୍କର ଚିଠିପତ୍ର ମାଧ୍ୟମରେ ଯୋଗାଯୋଗ ଥାଏ ।

ଦିଲ୍ଲୀରେ ଥିବା ସମୟରେ ବୈକୁଣ୍ଠ ବାବୁଙ୍କର ବହୁ ଉଚ୍ଚକୋଟୀର ଲେଖା ଜାତୀୟସ୍ତରରେ ଦୈନିକ ଖବର କାଗଜ The Times of India ଏବଂ ବିଭିନ୍ନ ପତ୍ର ପତ୍ରିକା ମାଧ୍ୟମରେ ପ୍ରକାଶ ପାଏ । ଯାହା ସେତେବେଳର ରାଜନୈତିକ, ସାମାଜିକ ତଥା ଅର୍ଥନୈତିକ ଅବସ୍ଥାକୁ ବିଶ୍ଳେଷଣ କରି ଲେଖା ଯାଇଥିଲା ଏବଂ ଉକ୍ତ ଲେଖା ସେତେବେଳର ସମସାମୟିକ ରାଜନୈତିକ ବ୍ୟକ୍ତି ବିଶେଷ ଓ ବୁଦ୍ଧିଜୀବି ମାନଙ୍କୁ ବହୁଳ ଭାବରେ ଆକୃଷ୍ଟ କରିଥିଲା । ସାଧାରଣ ମଣିଷର ଉନ୍ନତି ତଥା ଭାବନାକୁ ପ୍ରକାଶ କରିବା ପାଇଁ ସେ ତାଙ୍କର ଲେଖନୀକୁ ଶାଣିତ କରି ତୋଳିଥିଲେ । ସମାଜର ଅବହେଳିତ ଲୋକଙ୍କ ପାଇଁ ସାମ୍ବାଦିକତା କରିବାକୁ ସେ ନିଜର ବ୍ରତ ଭାବେ ଗ୍ରହଣ କରି ନେଇଥିଲେ ।

୧୯୭୫ ମସିହା ଜରୁରୀ କାଳୀନ ପରିସ୍ଥିତି ସମୟରେ ପୋଲିସର ହିଟଲରୀ ରାଜତ୍ୱ ଓ ପତ୍ର ପତ୍ରିକା ଉପରେ ଅଂକୁଶ ତଥା ବାକ୍ ସ୍ୱାଧୀନତାକୁ ଘୃପି ଦେବାର ପ୍ରୟାସ ସମୟରେ ଆମ ମଧ୍ୟରେ ଯୋଗାଯୋଗ ବିଚ୍ଛିନ୍ନ ହେଲା ।

ପରବର୍ତ୍ତୀ ସମୟରେ ଆମ୍ଭେ ଏକତ୍ର ହେଲୁ ଭୁବନେଶ୍ୱରରେ । ବୈକୁଣ୍ଠ ବିଶ୍ୱାଳ ଏହି ସମୟରେ 'ଲୋକାୟତ' ପତ୍ରିକା ମାଧ୍ୟମରେ ଦଳିତ, ଅବହେଳିତ, ମେହେନତି ଖଟିଖିଆ ମଣିଷର ଆବେଗକୁ ପ୍ରକାଶ କରି ତାଙ୍କ ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲେ । ତାଙ୍କ ସମ୍ପାଦନାରେ "ଲୋକାୟତ" ଓଡ଼ିଆ ପତ୍ରିକା କ୍ଷେତ୍ରରେ ଏକ

ମାଇଲ ଖୁଣ୍ଟ ବନିଯାଇଥିଲା । କିନ୍ତୁ ଆର୍ଥିକ ପରିସ୍ଥିତି ଯୋଗୁଁ ପତ୍ରିକାଟି ବନ୍ଦ ହୋଇଯାଇଥିଲା । ଯାହା ବନ୍ଧୁମାନଙ୍କୁ ଖୁବ୍ ନିରାଶ କରିଥିଲା ।

ଅଶି ଦଶକରେ ଆମ୍ଭେ କେତେକ ବନ୍ଧୁ ଏକତ୍ର ଭାବେ ନିଷ୍ପତ୍ତି ନେଲୁ ଓଡ଼ିଶାରେ ଏକ ଦୈନିକ ପତ୍ରିକାର ପ୍ରକାଶ କରିବା ପାଇଁ । ଯାହା ପରବର୍ତ୍ତିକାଳରେ 'ନବ ପ୍ରଭାତ' ଭାବେ ଜନ୍ମ ଲାଭ କରିଥିଲା । ଏହାର ସମସ୍ତ ଦାୟିତ୍ୱ ବନ୍ଧୁ ବୈକୁଣ୍ଠ ବାବୁ ନେଇଥିଲା ବେଳେ ମୋତେ ପରିଚ୍ଛଳନା ଦାୟିତ୍ୱ ଦିଆ ଯାଇଥିଲା । ଉକ୍ତ ପରିଚ୍ଛଳନା ଦାୟିତ୍ୱ ମୁଁ ସୁରୁରୁରୂପେ ପାଳନ କରୁଥିଲା ବେଳେ ବନ୍ଧୁଙ୍କ ପରିବାର ସହିତ ଘନିଷ୍ଠ ହେବାର ସୁଯୋଗ ପାଇଥିଲି । ବନ୍ଧୁଙ୍କ ପତ୍ନୀ ଶ୍ରୀମତୀ ସତ୍ୟଭାମା ଦେବୀ ସୁଦୂର ସୁନ୍ଦରଗଡ଼ ଜିଲ୍ଲାର ଏକ ଆଦିବାସୀ ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଭାବେ କାର୍ଯ୍ୟ କରୁଥିଲା ବେଳେ ତାଙ୍କର କନ୍ୟା ବୁଢ଼ୀ (ଚେତନା) ଓ ପୁତ୍ର ବାବୁ (ଚିନ୍ମୟ) ବୈକୁଣ୍ଠ ବାବୁଙ୍କ ସହିତ ଭୁବନେଶ୍ୱରରେ ଅବସ୍ଥାନ କରୁଥିଲେ । ଯାହାଫଳରେ କି ପିଲାମାନଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ ଗଢ଼ି ଉଠିଥିଲା ଓ ଆମ୍ଭେ ସମସ୍ତେ ଅତି ଅନ୍ତରଙ୍ଗ ହୋଇ ଯାଇଥିଲୁ । ମୁଁ ତାଙ୍କର ଦାଦା ଭାବେ ସର୍ବତ୍ର ପରିଚିତ ଥିଲି ।

ବନ୍ଧୁ ବୈକୁଣ୍ଠ ବାବୁଙ୍କ କରକମଳରେ ବହୁ ନବ ପ୍ରତିଭା ତଥା ନୂତନ ପିଢ଼ିର ସାମ୍ବାଦିକ ସୃଷ୍ଟି ହୋଇ ବର୍ତ୍ତମାନ ସାମ୍ବାଦିକ ଭାବରେ ସମାଜରେ ନିଜକୁ ପ୍ରତିଷ୍ଠିତ କରିପାରିଛନ୍ତି । 'ନବପ୍ରଭାତ' ବାସ୍ତବରେ ଓଡ଼ିଆ ପତ୍ରିକା ଜଗତରେ ବହୁ ଯୁବ ପ୍ରତିଭାଙ୍କୁ ଆଲୋକକୁ ଆଣିବା ସହ ରାଜନୈତିକ ଓ ସାମାଜିକ କ୍ଷେତ୍ରରେ ନୂତନ ଚେତନାର ପ୍ରଭାବ ପକାଇଥିଲା ।

ମଣିଷ ଜୀବନର ବାସ୍ତବ ସତ୍ୟ ହେଉଛି 'ମୃତ୍ୟୁ' । ୧୯୯୮ ମସିହା ମେ ମାସର ୨୮ ତାରିଖରେ ପ୍ରଚଣ୍ଡ ରୌଦ୍ରତାପରେ ବନ୍ଧୁ ବୈକୁଣ୍ଠ ବାବୁଙ୍କର ଅଳ୍ପବୟସରେ ଅକାଳ ବିୟୋଗ ହୁଏ । ତାଙ୍କ ବିୟୋଗ ଖାଲି ମୋ ପାଇଁ ନୁହେଁ, ସମଗ୍ର ଭାରତ ବର୍ଷର ଚିନ୍ତାନାୟକ, ପ୍ରତିକା ଜଗତ, ସାହିତ୍ୟ ଜଗତ ତଥା ସାମ୍ବାଦିକ ଜଗତ ପାଇଁ ଏକ ଶୂନ୍ୟ ସ୍ଥାନ ସୃଷ୍ଟି କରି ଦେଇଗଲା । ଆମ୍ଭେ ସମସ୍ତେ ହରାଇ ବସିଲୁ ଜଣେ ମାନବବାଦୀ, ସୁବକ୍ତା, ଚିନ୍ତାନାୟକ, ଶ୍ରେଷ୍ଠ ଆଶା ସୃଷ୍ଟିକାରୀ ମଣିଷକୁ ।

ବୟାଳିଶ ମୌଜା, କଟକ



# ଯାହାଙ୍କୁ ଭଗବାନ ବେଶୀ ଭଲ ପାଆନ୍ତି

**ନୃସିଂହ ଚରଣ ସାହୁ**

ସଂସାରରୁ ଭଲ ଲୋକମାନେ ଏତେ ଶୀଘ୍ର କାହିଁକି ପଳାନ୍ତି ? ସେମାନଙ୍କୁ କ'ଣ ଭଗବାନ ବେଶୀ ଭଲ ପାଆନ୍ତି ? ଅନେକ ସମୟରେ ଏହି ପ୍ରଶ୍ନ ମନକୁ ଆନ୍ଦୋଳିତ କରେ । କାହିଁକି ସ୍ୱାମୀ ବିବେକାନନ୍ଦ, ଶଙ୍କର, ପଣ୍ଡିତ ହରିହର ଦାସଙ୍କ ଭଳି କର୍ମଯୋଗୀମାନେ ସଂସାରକୁ ଆହୁରି ସୁନ୍ଦର, ସମୃଦ୍ଧ ଓ ସୁରୁଚି ସମ୍ପନ୍ନ କରିବା ପୂର୍ବରୁ ଆକସ୍ମିକ ଭାବେ ବିଦାୟ ନେଇଗଲେ ? ସେହିମାନେ ଏଭଳି ଏକ ଶ୍ରେଣୀର ଲୋକ, ଯେଉଁମାନଙ୍କ ବିବେକ, ବୁଦ୍ଧି ଓ ଜ୍ଞାନଗାରିମା ସମସ୍ତଙ୍କ ପାଇଁ ଆଦରଣୀୟ ହୋଇଥାଏ । ସେହିମାନଙ୍କ ହୃଦୟ ସମାଜର ଦଳିତ, ଶୋଷିତ, ବଞ୍ଚିତ ଓ ଅବହେଳିତଙ୍କ ପାଇଁ ସତତ ବ୍ୟାକୁଳ ଥାଏ ଏବଂ ସାମାନ୍ୟ ଅବକାଶ ପାଇଲେ ସେହିମାନେ ହିଁ ନିଜକୁ ତଥା ନିଜ ପରିବାରକୁ ପଛ କରି ଅନ୍ୟମାନଙ୍କ ପାଇଁ ଅଗ୍ନିକୁଣ୍ଡକୁ ଡେଇଁ ପଡ଼ନ୍ତି । ଏହି ଶ୍ରେଣୀର ଜଣେ 'ଭଲ ମଣିଷ' ଥିଲେ ଶ୍ରଦ୍ଧେୟ ବୈକୁଣ୍ଠ ନାଥ ବିଶ୍ୱାଳ । ୧୯୯୮ର ପ୍ରଚଣ୍ଡ ରୌଦ୍ରତାପ ଯାହାଙ୍କୁ କବଳିତ କରିନେଇଥିଲା ମାତ୍ର ୪୭ ବର୍ଷ ବୟସରେ । ବିପୁଳ ସମ୍ଭାବନା, ଅନେକ ଆଶା, ଅସୀମ ପ୍ରତିଭା ଥିବା ଜଣେ ବିଚକ୍ଷଣ ଜନସେବୀ ଅକାଳରେ ବାଟକାଟି ଚାଲିଗଲେ ଭଗବାନଙ୍କ ନିକଟକୁ ।

ବୈକୁଣ୍ଠ ଥିଲେ ଜଣେ ପ୍ରତିଭାବାନ ଛାତ୍ର ଓ ଆଦର୍ଶ ଛାତ୍ରନେତା । ମାଟ୍ରିକ୍ ପରୀକ୍ଷାରେ ସେ ବିଶେଷ କୃତିତ୍ୱ ଅର୍ଜନ କରିଥିଲେ । କିନ୍ତୁ ତା' ଠାରୁ ତାଙ୍କର ଭଲ ପଣିଆ ତାଙ୍କର ସାଥୀ, ସହୋଦର ଓ ଅନୁଜ ମାନଙ୍କୁ ଅଧିକ ଅନୁପ୍ରେରିତ କରିଥିଲା । ପ୍ରାୟ ୧୯୬୭ କିମ୍ବା ୧୯୬୮ ମସିହାରେ ତାଙ୍କରି ଦୁଇଜଣ ଅନୁଜ ପ୍ରତିମ ତଥା ଏକାସ୍କୁଲ ଓ ଏକା ଶ୍ରେଣୀର ଛାତ୍ର ରେଭେନ୍ସା କଲେଜ ପୂର୍ବ ଛାତ୍ରାବାସର ଅନ୍ତେବାସୀ ଶ୍ରୀମାନ୍ ସୁରେନ୍ଦ୍ରନାଥ ପରିଡ଼ା ଓ ନିଗମାନନ୍ଦଙ୍କ ଠାରୁ ବୈକୁଣ୍ଠଙ୍କ ସୁଗୁଣ ସମ୍ପର୍କରେ ଆଭାସ ପାଇଥିଲି । ସେତେବେଳେ ମୁଁ ପ୍ରଜାତନ୍ତ୍ର 'ମୀନାବଜାର'ର ଜହ୍ଣୁରୀ ଭାଇ ଥାଏ ଏବଂ ଅନୁଜ ମାନଙ୍କୁ ପ୍ରାଣଭରି ଭଲପାଉଥାଏ । କଥା ପ୍ରସଙ୍ଗରେ ସେମାନଙ୍କ ପାଟିରୁ ବାହାରି ପଡ଼ିଥିଲା, ଆପଣଙ୍କ ଭଳି ଆଉଜଣେ ଭଲ ମଣିଷଙ୍କୁ ଜାଣିଛୁ, ସେ ହେଉଛନ୍ତି ଆଦରର ବୈକୁଣ୍ଠ ଭାଇ, ବର୍ତ୍ତମାନ ଭଦ୍ରକ କଲେଜର ଛାତ୍ରନେତା ।

ସେବେଠାରୁ ବୈକୁଣ୍ଠଙ୍କୁ ଦେଖିବାପାଇଁ ମନରେ ପ୍ରବଳ ବାସନା ଜାଗ୍ରତ ହୋଇଥିଲା ଏବଂ ସବୁବେଳେ ତାଙ୍କ ଭଲମନ୍ଦ ଖବର ରଖୁଥିଲି । ବୈକୁଣ୍ଠ ଭଦ୍ରକ କଲେଜ ଓ ଦିଲ୍ଲୀ ସ୍କୁଲ୍ ଅଫ୍ ଇକନମିକ୍ସରେ ପଢ଼ାପଢ଼ି ସାରି ସଂସାରରେ ପାଦଦେଲେ । ମାତ୍ର ସେ ସାଧାରଣଙ୍କ ଭଳି ନିଜପାଇଁ ଉଚ୍ଚ ଚାକିରୀ କିମ୍ବା ଆକର୍ଷଣୀୟ ପଦ ପଦବୀର ଅଧିକାରୀ ହେବା ଅପେକ୍ଷା ଲୋକ ସେବାକୁ ଜୀବନର ବ୍ରତ କରିନେଲେ । ଏହି ଉଦ୍ଦେଶ୍ୟରେ ସେ

ଗଣ ମାଧ୍ୟମର ଶକ୍ତି ଉପଲବ୍ଧି କରି 'ଲୋକାଗ୍ରର' ନାମରେ ଏକ ସାପ୍ତାହିକ ସମ୍ବାଦପତ୍ର ଓ ପରେ 'ନବପ୍ରଭାତ' ନାମରେ ଏକ ଦୈନିକ ସମ୍ବାଦପତ୍ରର ପ୍ରକାଶନ କଲେ । ଏଥିରେ ମୁଖ୍ୟତଃ ମୂକ, ନିରୀହ, ଶୋଷିତ ଶ୍ରମିକ ଓ ଦରିଦ୍ର ଆଦିବାସୀ ମାନଙ୍କ ସମସ୍ୟା ଓ ସମାଧାନର ସୂତ୍ର ପ୍ରକାଶିତ ହେଲା । କ୍ରମେ କ୍ରମେ ବୈକୁଣ୍ଠ ସେ ସମୟର (ସତୁରୀ ଦଶକର) ଅନ୍ୟାନ୍ୟ ଯୁବକମାନଙ୍କ ଭଳି ନକ୍ସଲପନ୍ଥୀ ଆନ୍ଦୋଳନ ପ୍ରତି ସହାନୁଭୂତି ପ୍ରକାଶ କଲେ । ପରିବାର ଓ ପୁତ୍ରକନ୍ୟାଙ୍କ ଭବିଷ୍ୟତ ତାଙ୍କ ଆଗରେ ତୁଚ୍ଛ ଓ ପଛ ହୋଇଗଲା । ସେ ଦାୟିତ୍ୱ ସମ୍ଭାଳି ନେଲେ ତାଙ୍କ ଆଦର୍ଶକୁ ଶ୍ରେୟ ମନେକରି ତାଙ୍କୁ ଭଲପାଇ ବିବାହ କରିଥିବା ଦୁଃଖିନୀ ପତ୍ନୀ ସତ୍ୟଭାମା । ସେ ଈଶ୍ୱରଙ୍କ ଆଶୀର୍ବାଦରୁ ସୁଦୂର ସୁନ୍ଦରଗଡ଼ର ବନ୍ଧବାହାଲରେ ଏକ ହାଇସ୍କୁଲରେ ଶିକ୍ଷାଦାନ କରୁଥିଲେ ।

ବୈକୁଣ୍ଠ ସାମ୍ବାଦିକତା ପ୍ରତି ଆକୃଷ୍ଟ ହେବାପରେ ମୋ ସହ ସଂପର୍କ ବଢ଼ିଗଲା । ପୁଣି ସେ ପଡ଼ୋଶୀ ହେଲେ । ମଝିରେ ମଝିରେ ଅଭାବ, ଅସୁବିଧାର ତାଡ଼ନାରେ ଜର୍ଜରିତ ହୋଇ ଯେତେବେଳେ ଦୁଃଖସୁଖ ହେବାକୁ ମୋ ପାଖକୁ ଟଙ୍କପାଣି ରୋଡ୍ ଘରକୁ ଚାଲି ଆସନ୍ତି, ମୁଁ ତାଙ୍କର ନିଷ୍ଠା ଓ ସାହସିକତାରେ ଚମତ୍କୃତ ହୁଏ । ସହସ୍ର ବାଧାବିଘ୍ନ ଓ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ନିଜର ଆଦର୍ଶକୁ ଜାବୁଡ଼ି ଧରିବାର ସଂକଳ୍ପ ମୋତେ ଅଭିଭୂତ କରେ । ଯତ୍ ସାମାନ୍ୟ ସାହାଯ୍ୟ ଅପେକ୍ଷା ଯଥା ସମ୍ଭବ ପ୍ରେରଣା ଓ ଉତ୍ସାହ ଯୋଗାଏ । ଆମଦ୍ୱାରା ଯାହା ହୋଇପାରିଲା ନାହିଁ, ତାଙ୍କ ଦ୍ୱାରା ତାହା ସମ୍ଭବ ହେବ ବୋଲି ମନରେ ବିଶ୍ୱାସ ଆଣେ । ମାତ୍ର -

" ବଡ଼ କ୍ରୂର କାଳ, ବଡ଼ ଅବିଶ୍ୱାସୀ,
ହାବୋଡ଼ି ଗଲା ସେ ଆଚମ୍ବିତେ ଆସି ।"

୧୯୯୮ ମେ ମାସ ୨୮ ତାରିଖ । ପ୍ରଚଣ୍ଡ ଖରାରେ ଅନନ୍ୟ ପ୍ରତିଭାର ଅଧିକାରୀ କର୍ମବୀର ବୈକୁଣ୍ଠ ନାଥ ମାଟିମା' କୋଳରେ ଢଳି ପଡ଼ିଲେ । ଆଉ ଆଖି ଖୋଲିଲେ ନାହିଁ, ତାଙ୍କର ଆଶା କଳିକା ଅକାଳରେ ମଉଳିଗଲା ।

ବୟସରେ ତରୁଣ ହେଲେ ହେଁ ତାଙ୍କର କାର୍ଯ୍ୟକଳାପରେ ପ୍ରୌଢ଼ର ପ୍ରବୀଣତା ପ୍ରକାଶ ପାଉଥିଲା । ତାଙ୍କର ଆଚରଣ ଓ ଉଚ୍ଚାରଣ ଉଚ୍ଚକୋଟୀର ଥିଲା । ସଫା ଧଳା ଧୋତି, ପଞ୍ଜାବୀ ଭିତରେ ତାଙ୍କର କୃଷ୍ଣବର୍ଣ୍ଣର ଶରୀର ଓ କୃଷ୍ଣଙ୍କ ଭଳି 'ଦୁଷ୍ଟ ନିବାରି ସନ୍ଥୁପାଳୁ' ମନୋଭାବ ସ୍ପଷ୍ଟ ବାରି ହୋଇ ପଡୁଥିଲା । ସମାଜ ଓ ଦେଶ ତାଙ୍କଠାରୁ ଭବିଷ୍ୟତରେ ଅନେକ ଆଶା କରିଥିଲା । ତାଙ୍କର ଅବର୍ତ୍ତମାନରେ ଆମେମାନେ ବୟସ୍କ ହୋଇ ଯାହା ଲୁହ ଗଡ଼ାଇବାକୁ ରହିଗଲୁ ।

କଳାହାଣ୍ଡିଆ ମେଘ ଯେତେ ଭୟଙ୍କର ଦିଶିଲେ ବି ତା କୋଳରେ ଅପୂର୍ବ ଦୀପ୍ତି ଓ ଜ୍ୟୋତି ସହ ବିଜୁଳି ଚମକେ । ବୈକୁଣ୍ଠଙ୍କ ଦେହାନ୍ତର ଆଠ ବର୍ଷ ପରେ ଆଜି ସେ

ଯେଉଁ ପୁତ୍ରକନ୍ୟା ରୂପକ ଝରାଦୁଇଟି ସେ ରୋପଣ କରିଯାଇଥିଲେ, ସେମାନଙ୍କର ନିଃସ୍ୱାର୍ଥ ସେବାଭାବ ଦେଖିଲେ ମନ ଉଲ୍ଲସିତ ହୋଇଉଠେ । ପୁତ୍ର ଚିନ୍ମୟ ଦିଲ୍ଲୀ ସ୍କୁଲ ଅଫ୍ ଇକୋନୋମିକ୍ସ ରୁ ସମାଜତତ୍ତ୍ୱରେ ଏମ୍.ଏ.ପଢ଼ି ବର୍ତ୍ତମାନ ଓଡ଼ିଶାର ସବୁଠାରୁ ଅବହେଳିତ ଅଞ୍ଚଳ ନୂଆପଡ଼ା ଜିଲ୍ଲାରେ କ୍ଷୁଧାର କରାଳଗ୍ରାସ ସମ୍ପର୍କରେ ଜେ.ଏନ୍.ୟୁ.ରେ ଗବେଷଣାରତ ଏବଂ କନ୍ୟା ଚେତନା ଓ ଜାମାତା ଅନୀଲ ସମାଜରେ ସଂସ୍କାର ଆଣିବା ନିମନ୍ତେ ଉତ୍ତମ ପୁସ୍ତକ ରଚନା ଓ ପ୍ରସାରଣରେ ବ୍ରତୀ ହେବା ସହ ଉତ୍ତମ ଶିକ୍ଷାଦାନକୁ ନିଜ ନିଜ ଜୀବନର ବ୍ରତ କରିନେଇଛନ୍ତି । ସେମାନେ ଯେ ଅକାଳରେ ଆକାଶରୁ ଅନ୍ତର୍ହିତ ହୋଇଥିବା କୀର୍ତ୍ତିମାନ ବୈକୁଣ୍ଠର ଅଧୁରା ସ୍ୱପ୍ନକୁ ବାସ୍ତବ ରୂପ ଦେବେ ଏବଂ କେବଳ "ନିଜପାଇଁ ନର, ଧର୍ମ ଜଗତରେ ଅପୁଚ୍ଛ ବାନର" ନ ହୋଇ ଯଶସ୍ୱୀ ଜୀବନର ଅଧିକାରୀ ହେବେ, ଏହି ବିଶ୍ୱାସ ପୋଷଣ କରି ବୈକୁଣ୍ଠଙ୍କୁ ସ୍ନେହର ଶ୍ରଦ୍ଧାଞ୍ଜଳି ଜଣାଉଛି ।

ପାଣ୍ଡବ ନଗର, ଆର୍.ପି. ୧୨୫<br>ଭୁବନେଶ୍ୱର -୧୮



# ବହୁମୁଖୀ ପ୍ରତିଭାର ଅଧିକାରୀ ବୈକୁଣ୍ଠ ବାବୁ

*ଶ୍ରୀ ରାଧାକୃଷ୍ଣ ସାମନ୍ତରାୟ*

ଝୁହୁଁ ଝୁହୁଁ କାଳର ଗତିପଥରେ ଆଠ ବର୍ଷ ବିତିଗଲା । ବହୁତ ଦିନର ବ୍ୟକ୍ତିଗତ ସମ୍ପର୍କ ଜଣେ ଅମାୟିକ ବ୍ୟକ୍ତିଙ୍କ ସଙ୍ଗେ, ସେ ହେଉଛନ୍ତି ବୈକୁଣ୍ଠନାଥ ବିଶ୍ୱାଳ ଯେ କି ବହୁମୁଖୀ ପ୍ରତିଭାର ଅଧିକାରୀ ଏବଂ ଭୁବନେଶ୍ୱର ଟଙ୍କପାଣି ରୋଡ଼ସ୍ଥିତ ମୋର ବାସଭବନର ଜଣେ ପଡ଼ୋଶୀ । ବୈକୁଣ୍ଠ ବାବୁଙ୍କ ସାଙ୍ଗରେ ମୋର ପ୍ରଥମ ପରିଚୟ ହୋଇଥିଲା ଟଙ୍କପାଣି ରୋଡ଼ସ୍ଥିତ ବିଷ୍ଣୁମନ୍ଦିରରେ ୧୯୮୫ ମସିହାରେ । ସ୍ୱଳ୍ପ ସମୟ ଦେଖାସାକ୍ଷାତ ଓ ବାର୍ତ୍ତାଳାପରେ ମୁଁ ଅନୁଭବ କରି ନେଇଥିଲି ବୈକୁଣ୍ଠବାବୁ ଜଣେ ବହୁମୁଖୀ ପ୍ରତିଭା ସମ୍ପନ୍ନ ବ୍ୟକ୍ତି । ପରବର୍ତ୍ତୀ କାଳରେ ସେ ଟଙ୍କପାଣି ରୋଡ଼ରେ ବାସଗୃହ ତିଆରି କରି ମୋର ପଡ଼ୋଶୀ ହୋଇ ରହିଲେ । ତାଙ୍କ ସହିତ ମୁଁ ବହୁତ ସମୟ ମିଶିଛି ଏବଂ କଥାବାର୍ତ୍ତା କରିଛି । ସେ ଏକାଧାରରେ ଥିଲେ ଜଣେ ସମାଜସେବୀ, ପରୋପକାରୀ, ରାଜନୀତି ବିଶାରଦ, ସୁବକ୍ତା ଏବଂ ଲେଖକ । ଇଂରାଜୀ ଏବଂ ସଂସ୍କୃତରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କର ଓଜସ୍ୱିନୀ ଏବଂ ମର୍ମସ୍ପର୍ଶୀ ଭାଷଣ ଶୁଣି ମୁଁ ସ୍ତବ୍ଧ ହୋଇଛି । ଜଣେ ଅତି ସରଳ ପ୍ରକୃତିର ଲୋକ କିନ୍ତୁ ଉଚ୍ଚମନା ବ୍ୟକ୍ତି । ସେ ମଧ୍ୟ ଜଣେ ଅର୍ଥନୀତି ବିଶାରଦ ଥିଲେ । ଗୋଲାମୀ ପ୍ରତି ତାଙ୍କ ଘୃଣାଭାବ ଥିଲା । ଟଙ୍କପାଣି ରୋଡ଼ରେ ଏକ ପ୍ରେସ କରି ଦୈନିକ ଖବର କାଗଜ ପ୍ରକାଶନ କରି ଅନ୍ୟାୟ ଏବଂ ଦୁର୍ନୀତିର ଘୋର ବିରୋଧ କରୁଥିଲେ ।

ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସବୁରି ମହଲରେ ସେ ପ୍ରଶଂସାର ପାତ୍ର ହୋଇଥିଲେ । ଏହିପରି ଜଣେ ପ୍ରତିଭା ସମ୍ପନ୍ନ ବ୍ୟକ୍ତି ୧୯୯୮ ମସିହା ମେ ମାସ ୨୮ ତାରିଖ ଦିନ ୧ ଘଣ୍ଟିକା ସମରେ ଅଂଶୁଘାତର ପ୍ରାର୍ଦୁଭାବ ସହ୍ୟ କରି ନ ପାରି ତାଙ୍କର ପରିବାରବର୍ଗଙ୍କୁ ଛାଡ଼ି ସ୍ୱର୍ଗାରୋହଣ କଲେ । ପରିବେଶ ଦୁଃଖରେ ମ୍ରିୟମାଣ ହୋଇଯାଇଥିଲା । ମୋତେ ଲାଗିଲା ସତେ ଯେପରି ବୈକୁଣ୍ଠ ବାବୁଙ୍କ ମୃତ୍ୟୁରେ ଗୋଡ଼ି ଓ ମାଟି ମଧ କାନ୍ଦୁଛି ।

ସ୍ମରଣିକା ପ୍ରକାଶନରେ ମୁଁ ଅତ୍ୟନ୍ତ ଆନନ୍ଦିତ । ଅଦ୍ୟ ୨୯/୦୪/୨୦୦୬ ବୈକୁଣ୍ଠବାବୁଙ୍କର ଅଷ୍ଟମ ବାର୍ଷିକ ଶ୍ରାଦ୍ଧରେ ମୁଁ ତାଙ୍କର ସ୍ୱର୍ଗତ ଆତ୍ମାପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ଏବଂ ଭଗବାନଙ୍କର ନିକଟରେ ପ୍ରାର୍ଥନା କରୁଛି ତାଙ୍କର ସ୍ୱର୍ଗତ ଆତ୍ମା ସଦା ସର୍ବଦା ବିଷ୍ଣୁପାଦ ତଳେ ଶାନ୍ତିରେ ରହୁ ଏବଂ ତାଙ୍କର ପରିବାରବର୍ଗ ସୁଖମୟ ଜୀବନ ଲାଭ କରନ୍ତୁ ।

"ମଣିଷ ମରିବ ଦିନେ କିଏ ବା ନମରେ
ସାର୍ଥକ ମରଣ ତାର ଯାହାପାଇଁ ମାଟିଗୋଡ଼ି ଝୁରେ ।"

ଆଇନଜୀବି
ଉଚ୍ଚ ନ୍ୟାୟାଳୟ, ଓଡ଼ିଶା



# ସେ ଆମର ବୈକୁଣ୍ଠ ଭାଇ !

***ସୁଷମା ନାଥଶର୍ମା***

ବ୍ରାହ୍ମଣୀ କୋଳରେ ବ୍ରାହ୍ମଣ ତୁମେ
ଫୁଟିଥିଲ ଗଙ୍ଗ ଶିଉଳି
ଅଳପ ଦିନରେ ଅନେକ ସ୍ମୃତିକୁ
ଆମେ ନ ପାରୁନୁ ଭୁଲି ।

ଦାଣ୍ଡିସାହି ଥିଲା ତୁମ ଶିକ୍ଷାକ୍ଷେତ୍ର
ଝୁରୁଛି ଝରାଇ ଲୁହ
କାହିଁସେ ପ୍ରତିଭା ପରଖି ନହୁଏ
କୁଆଡ଼େ ଗଲା ମୋ ପୁଅ ।

ଭଦ୍ରକ କଲେଜ ଛାତ୍ର ନେତା ରୂପେ
ହୋଇଲ ସବୁରି ପ୍ରିୟ
କୃତିତ୍ୱ ତୁମର କହି ହୁଏ ନାହିଁ
ସବୁଠି ତୁମର ଜୟ ।

ଦିଲ୍ଲୀ ବିଦ୍ୟାଳୟ ଅର୍ଥନୀତି ଶାସ୍ତ୍ରେ
ଲଭିଣ ଡିଗ୍ରି ଧାରୀ
ଅର୍ଥ ଉପାର୍ଜନ ଲାଳସାକୁ ତେଜି
ହୋଇଲ ସମାଜ ସେବି ।

ବିନୟ ତୁମର ଚିର ସହଚର
ସରଳ ପୋଷାକ ପିନ୍ଧି
ମଧୁର କଥାରେ ତୋଷୁଥିଲ ମନ
ସଦଗୁରୁ ପଦ ବନ୍ଦୀ ।

ଅର୍ଥର ଲାଳସା ବିଷୟ ବାସନା
ସବୁ କୁ କରିଲ ତ୍ୟାଗ
ଚେତନା, ଚିନ୍ମୟ ଅମୂଲ୍ୟ ରତନ
ତୁମରି ଦିଆ ସମ୍ପଦ ।

ସୁବାସ କୁସୁମ ମହକ ବିତରି
ଧରାରୁ ବିଦାୟ ନେଲ
ତୁମ କାବ୍ୟ ଗୀତି ଦରଫୁଟା ହୋଇ
ଝରାଏ ଆଖିରୁ ଲୁହ ।

ବଡ଼ଭାଇ ରୂପେ ସବୁ ଅରଦଳୀ
ସହି କେତେ ସ୍ନେହଦେଇ
'ସ୍ମରଣିକା' ତବ ବନ୍ଦନା ଜଣାଏ
ଆମ ବଇକୁଣ୍ଠ ଭାଇ !

ଶିକ୍ଷୟିତ୍ରୀ, ଗୋପାଳପୁର



# ଏକ ଅପାଶୋରା ଅତୀତର ସ୍ମୃତି !

***ଶାନ୍ତିଲତା ନାଥଶର୍ମା***

ସେ ଆମର ଅତି ପ୍ରିୟ ବୈକୁଣ୍ଠ ଭାଇ ! କେନ୍ଦ୍ରାପଡ଼ା ଜିଲ୍ଲାର ପ୍ରାୟ ପ୍ରତ୍ୟେକ ଅଞ୍ଚଳର, ପ୍ରତ୍ୟେକ ବିଦ୍ୟାଳୟର ଛାତ୍ରଛାତ୍ରୀ ମାନଙ୍କ ନିକଟରେ ଏକ ମେଧାବୀ ଛାତ୍ର ରୂପେ ସୁପରିଚିତ । ବହୁତ ସ୍ନେହ ଆଦର ଭିତରେ ସେ ମତେ ରଖିଥିଲେ । ଅନେକ ସମୟରେ ପିଲାଦିନେ ତାଙ୍କ ଘର ନାହିଆଡିଆରେ ମୁଁ ରହେ । ବହୁତ ମିଠା ଖୁଆନ୍ତି । ସଂସାରିକ ଜୀବନରେ ତାଙ୍କୁ ବଡ଼ ଭିଣୋଇ ରୂପେ ପାଇଥିଲୁ । ତାଙ୍କ ଭଳି ବିଦ୍ୱାନ, ବକ୍ତା ସତେ ଯେପରି ବଣମଲ୍ଲୀ ଭଳି ବଣରେ ରହିଯିବା ଭଳି ମୁଁ ଅନୁଭବ କରେ । ଶେଷ ଜୀବନ କଟିଥିଲା ତାଙ୍କର ଜଣେ ସାଧୁଙ୍କ ସଂସ୍ପର୍ଶ ଓ ସଙ୍ଗ ସୁଖରେ । ନାନୀ ଆମର ବହୁ ଦୂରରେ ପିଲା ଦୁଇଟିକୁ ଧରି ରହୁଥିଲା । କେନ୍ଦ୍ରାପଡ଼ା ଚାକିରୀ ଜୀବନରେ ସେ ଅନେକ ଥର ମୋ ପାଖକୁ ଆସିଛନ୍ତି । ତାଙ୍କର ସ୍ନେହ ଅତୁଳନୀୟ । ତାଙ୍କର ଅକାଳ ବିୟୋଗରେ ଆମେ ମର୍ମାହତ ହୋଇଗଲୁ । ସତେ ଯେପରି ଜଣେ ଅଭିଶପ୍ତ ଦେବତା ମର୍ତ୍ତ୍ୟମଣ୍ଡଳରେ ଜନ୍ମଲାଭ କରି ତାଙ୍କର କର୍ମଶେଷ କରି ବୈକୁଣ୍ଠ ପୁରକୁ ଗମନ କଲେ । ହେଲେ ସେ ଆମ ଭଉଣୀକୁ ଦୁଇଟି ରତ୍ନ ଭଣ୍ଡାର ଧରାଇ ଦେଇଛନ୍ତି । ସେ ହେଉଛନ୍ତି ଆମ ସୁନା ନାକି ଚେତନା ଓ ଚିନ୍ମୟ, ତାଙ୍କ ସ୍ମରଣିକାରେ କ'ଣ ଲେଖିବି ? ତାଙ୍କ ସ୍ମୃତି ତ ଅବର୍ଣ୍ଣନୀୟ । ସବୁ ଯେମିତି ଅସମ୍ପୂର୍ଣ୍ଣ ରହି ଯାଇଛି ।

କେନ୍ଦ୍ରାପଡ଼ା



# ବୈକୁଣ୍ଠ ଭାଇ...

*ଗୀତାଞ୍ଜଳୀ ନାଥ*

ଜନ୍ମମାତ୍ରେ ହିଁ ମୃତ୍ୟୁ ସୁନିଶ୍ଚିତ । ଏହାକୁ କେହି ଏଡ଼ାଇ ଦେଇ ପାରିବେ ନାହିଁ । ମାତ୍ର ଯେଉଁମାନେ ସେମାନଙ୍କ କର୍ମ ଓ ଯଶ ବଳରେ ସ୍ମରଣୀୟ ହୋଇଯାଇଛନ୍ତି, ସେମାନଙ୍କ ମଧ୍ୟରୁ ଆମ ବୈକୁଣ୍ଠ ଭାଇ ଅନ୍ୟତମ । କେନ୍ଦ୍ରାପଡ଼ା ଜିଲ୍ଲା ନାହିଆଡିଆ ଗ୍ରାମ ତାଙ୍କୁ ଜନ୍ମ ଦେଇ ଧନ୍ୟ ମନେକରୁଛି । ଦାଣ୍ଡିସାହି ହାଇସ୍କୁଲ୍‌ରୁ ସର୍ବାଧିକ ନମ୍ବର ରଖି ପାସ୍ କରିଥିଲେ । ଦିଲ୍ଲୀରୁ ଅର୍ଥନୀତି ଶାସ୍ତ୍ରରେ ଏମ୍.ଏ ପଢ଼ି ମଧ ସରକାରୀ ଚାକିରୀକୁ ତୁଚ୍ଛ କରି ଜନସେବାରେ ନିଜକୁ ନିୟୋଜିତ କରିଥିଲେ । ସେ ଥିଲେ ଜଣେ ବାଗ୍ମୀ ପୁରୁଷ, ବିଦ୍ୱାନ, ବକ୍ତା, ସମାଜସେବୀ ଓ ପରୋପକାରୀ ବ୍ୟକ୍ତି । ବଣମଲ୍ଲୀ ଭଳି ତାଙ୍କ ପ୍ରତିଭା ଅଦିନେ ମଉଳି ଯାଇଛି । ମାତ୍ର ୪୭ ବର୍ଷ ବୟସରେ ସେ ଆମ ସମସ୍ତଙ୍କୁ ଛାଡ଼ି ଚାଲିଗଲେ ।

ସେ ଥିଲେ ମୋ ବାପାଙ୍କ ଘରର ବଡ଼ଜ୍ୱାଇଁ । ତାଙ୍କ ବଡ଼ ଭିଣୋଇ ରୂପେ ପାଇ ଆମେ ଗର୍ବ ଅନୁଭବ କରୁ । ମୋ ବାହାଘର ତାଙ୍କ ସହିଦନଗରସ୍ଥ ବାସଭବନରେ ସମ୍ପନ୍ନ ହୋଇଥିଲା । ଆମ ସମସ୍ତଙ୍କୁ ସେ ସାନଭଉଣୀର ସ୍ନେହ ଦେଉଥିଲେ । ତାଙ୍କ ସ୍ମରଣିକାରେ ମୁଁ କ'ଣ ଲେଖିପାରିବି ? ପରମେଶ୍ୱରଙ୍କ ନିକଟରେ ସେ ତ ସ୍ଥାନ ପାଇସାରିଛନ୍ତି । ସେଠି ଥାଇ ଆମମାନଙ୍କୁ ଆଶିର୍ବାଦ କରନ୍ତୁ, ଏହାହିଁ କାମନା ।

୬୮୯, ଶହୀଦନଗର



# ମୁଁ ମୋ ବାପାଙ୍କୁ ଯେତିକି ଜାଣେ

*ଚେତନା ବିଶ୍ୱାଳ*

ପିଲାବେଳୁ ଶୁଣିଛି ଯେ ବାପା ମତେ ବହୁତ ଗେହ୍ଲା କରନ୍ତି । ମୁଁ ବି ସବୁବେଳେ "ବାପା ବାପା" ହେଉଥାଏ । ଏମିତିକି ଥରେ ମୋ ସାନ ମା' (ବାପାଙ୍କ ସାନ ବୋଉ) ମୋ ଉପରେ କୌଣସି କାରଣରୁ ବିରକ୍ତ ହୋଇ କହିଲା, "ତୁ କି ଝିଅଟା ମ ?" ମୁଁ କୁଆଡ଼େ ଉତ୍ତର ଦେଇଥିଲି "ମୁଁ ମୋ ବାପାଙ୍କ ଗେହ୍ଲା ଝିଅ ।" ଏହି କଥା ସେ ହସି ହସି ଆସି ବାପାଙ୍କୁ ଓ ଅନ୍ୟମାନଙ୍କୁ କହିଥିଲା । ଆମେ ଛୁଆ ଦି'ଜଣ ବୋଉ ପାଖରେ ସୁନ୍ଦରଗଡ଼ରେ ରହୁ । ବାପା ଏକୁଟିଆ ଭୁବନେଶ୍ୱରରେ ରହନ୍ତି । ପୁଣି ଆମେ ଯେତେବେଳେ ଭୁବନେଶ୍ୱରରେ ପଢ଼ିଲୁ, ବାପାଙ୍କ ପାଖରେ ରହିଲୁ । ବୋଉ ଏକୁଟିଆ ସୁନ୍ଦରଗଡ଼ରେ ରହିଲା । ତେଣୁ ବାପାଙ୍କ ପାଖରେ ଆମେ ଏକାଠି ହୋଇ ରହିବାଟା ଖୁବ୍ କମ୍ ଦିନ ସମ୍ଭବ

ହୋଇଛି । ସେହି ସ୍କୁଲ ସମୟରେ ଆମର ଖାଇବା ରହିବା ଅସୁବିଧା ଯୋଗୁ ଆମେ ଭାଇ ଭଉଣୀ ବଡ଼ଭାଇ (ଅନ୍ତର୍ଯ୍ୟାମୀ ଶ୍ୱାଇଁ)ଙ୍କ ପାଖରେ ରହିଲୁ । ଦଶମ ପଢ଼ି ସାରିବା ପରେ ମୁଁ ହଷ୍ଟେଲରେ ରହିଲି । ବାବୁ ବାପାଙ୍କ ପାଖରେ ରହିଲା । ଏମିତି ଭାବରେ ବିକ୍ଷିପ୍ତ ହୋଇ ଆମର ଛୋଟ ପରିବାରଟି ବଞ୍ଚୁଥିଲା । କେବଳ ଲମ୍ବା ଛୁଟି ମାନଙ୍କରେ ହିଁ ଆମେ ଏକାଠି ରହୁଥିଲୁ । ତଥାପି ଏମିତି ଅଳ୍ପଦିନର ଏକତ୍ର ଜୀବନଯାପନ ମଧ୍ୟରେ ମଧ୍ୟ ଆମର ପାରିବାରିକ ସମ୍ପର୍କ ଅତି ଦୃଢ଼ ଥିଲା । ବାପାଙ୍କ ସହ ଆମର ସମ୍ପର୍କ ସବୁଦିନ ନୂଆ ନୂଆ । ସେସବୁ ମୋ ପାଇଁ କାଗଜ କଲମରେ ବର୍ଣ୍ଣନା କରିବା ଅସମ୍ଭବ ବ୍ୟାପାର । କେବଳ ସ୍ଥଳ ବିଶେଷରେ କଥାବାର୍ତ୍ତା ବେଳେ କୁହାଯାଇପାରେ । ତଥାପି ମୁଁ ମୋ ସହ ମା ବାପାଙ୍କ ସମ୍ପର୍କ ଏବଂ ଜୀବନ ଉପରେ ଗଭୀର ପ୍ରଭାବ ପକାଇଥିବା କିଛି ଅତି ଛୋଟ ଘଟଣା କଥା କହିବି ବୋଲି ଭାବିଛି ।

ବାପା ଯେତେବେଳେ ଛୋଟବେଳେ ଆମ ପାଖକୁ ଯାଆନ୍ତି, ବାପାଙ୍କ ପାଖରେ ମୁଁ ଶୁଏ । ବାବୁ ବୋଉ ପାଖରେ ଶୁଏ । ଏହା ଯେପରି ଏକ ଅଲିଖିତ ନିୟମ । କେବେ ଏହାର ବ୍ୟତିକ୍ରମ ହୋଇନି । ମୋର ତୃତୀୟ ଶ୍ରେଣୀ ବୃତ୍ତିପରୀକ୍ଷା ଥାଏ । ସକାଳୁ ସକାଳୁ ବୋଉ ଉଠାଇଲା ପଢ଼ିବାକୁ । ମୋର ମୋଟେ ଉଠିବାକୁ ଇଚ୍ଛା ନଥାଏ । ବାପାଙ୍କୁ ଆହୁରି ଜୋରରେ କୁଣ୍ଢାଇଧରି ପଚାରିଲି, "ମୁଁ ବୃତ୍ତି ନ ପାଇଲେ ତମର ମନ କଷ୍ଟ ହେବ ?" ବାପା ମନାକଲେ, ବାସ୍ ମୁଁ ଆଉ ଉଠିଲିନି । ଭାବିଲି ବାପାଙ୍କର ତ ମନ ଦୁଃଖ ନାହିଁ । ମୋର ବୃତ୍ତି ପାଇବା କ'ଣ ଦରକାର ? ବହୁତ ଡେରିରେ ଉଠିଲି । ପରୀକ୍ଷାରେ ଯାଇ ପହଞ୍ଚିଲା ବେଳକୁ ପରୀକ୍ଷା ଅଧଘଣ୍ଟା ଆଗରୁ ଆରମ୍ଭ ହୋଇଗଲାଣି । ଏହି ନିର୍ଦ୍ଦିଷ୍ଟ ଘଟଣାଟି ମୋର ମନେଥାଏ । ବଡ଼ ହେବାପରେ ଏହା ବିଷୟରେ ବହୁତ ଭାବିଛି । ମୁଁ ଶୁଣିଛି ବାପା ବହୁତ ଭଲ ପାଠ ପଢୁଥିଲେ । ତେଣୁ ତାଙ୍କର ବି ନିଶ୍ଚୟ ଆଶାଥିବ ଆମେ ଭଲ ପଢୁବୋଲି । କିନ୍ତୁ କେବେ ବି ସେ ଆମ ପାଠ ପଢ଼ା ଉପରେ ଜୋର ଦେଇନାହାନ୍ତି । ବରଂ ପରୀକ୍ଷା ପୂର୍ବରୁ ପାଠ ପଢ଼ିଲେ ଗାଳି ଦିଅନ୍ତି । ସ୍କୁଲ୍ ସରିବା ପରେ ଆମେ ନିଜ ଇଚ୍ଛାରେ ନିଜର ପାଠ୍ୟ ବିଷୟ ଓ ଶିକ୍ଷା ଅନୁଷ୍ଠାନ ବାଛିଥିଲୁ । ଆମଠୁ କଣ ଆଶା କରନ୍ତି ସେକଥା ମଧ୍ୟ ସେ କେବେ କହିନାହାନ୍ତି । କିନ୍ତୁ କେଜାଣି କେମିତି ମୁଁ ଜାଣିଥିଲି ଯେ ବାପା ଚାକିରୀକୁ ଭଲ ପାଆନ୍ତି ନାହିଁ । ମୋ ଉପରେ ବି ଯାର କେମିତି ପ୍ରଭାବ ପଡ଼ିଥିଲା କେଜାଣି ମୁଁ ବି ପାଠ ପଢ଼ିବା ବେଳେ ଚାକିରୀ କରିବା ଲକ୍ଷ୍ୟ ନେଇ ପଢ଼ିନଥିଲି । କିନ୍ତୁ ବଡ଼ ହେଲାପରେ ବାପା କହୁଥିଲେ, "ଯାହା ପଢୁଛ, ତାକୁ ଭଲକରି ପଢ଼ ।" ମୁଁ ଦିନେ ପଚାରିଥିଲି, "ବାପା, ତମେ କ'ଣ ଚାହଁ ? ମୁଁ ବଡ଼ ହେଲେ କ'ଣ ହେବି ?" ମତେ କହିଲେ "ମୁଁ କିଛି ଚାହେଁନା । କେବଳ ଏତିକି ଚାହେଁ ଯେ ତୁ ଶାନ୍ତିରେ ରହ ।"

ମତେ ଲାଗେ ମୋ ବାପାଙ୍କ ସହ ମୋର ସମ୍ପର୍କ ଟିକେ ଅଲଗା । ବିଭିନ୍ନ ସମୟରେ ବିଭିନ୍ନ ରୂପ । ଅନେକ ସମୟରେ ମତେ କହନ୍ତି, "ତୁ କୋଉ ଜନ୍ମରେ ମୋ ବୋଉ ଥିଲୁ ।"

ଆଉ ମୁଁ ବି ଲକ୍ଷ୍ୟ କରିଛି, ମୋ ମନଟା ସବୁବେଳେ ବାପାଙ୍କ ପାଇଁ କାନ୍ଦେ । ମତେ ଲାଗେ ଯେମିତି ବାପା ଭାରି ଅସହାୟ । ମୋ ବିନା ଚଳିବା ଭାରି କଷ୍ଟ । ସେ ତ ଏମିତି ଗୋଟେ ମଣିଷ ଯେ କୌଣସି ନିତିଦିନିଆ କାମ କରିବାକୁ ଅସମର୍ଥ । ଖାଲି କଥାରେ ମୋହିଦେବା, ବଡ଼ ବଡ଼ କଥା ଚିନ୍ତା କରିବାଟା ଠିକ୍ ଜଣା । ନିଜର ଧୋତି ପଞ୍ଜାବୀ ବି ନିଜେ ସଫା କରୁନଥିଲେ । ଖୁବ୍ ଛୋଟ ବେଳୁ ସେ କାମ ମୁଁ କରିଛି । ଥରେ ବାପାଙ୍କ ଦେହ ଖରାପ ଥିଲା । ପତଳା ଝାଡ଼ା ହେଉଥାଏ । କେମିତି କଣ ଧୋତି ଖରାପ ହୋଇଯାଇଥିଲା । କଣ ଭାବି କେଜାଣି ସେ ଧୋତିକୁ ଲୁଚାଇ ରଖି ଦେଇଥିଲେ । ମୁଁ ଦୁଇଦିନ ପରେ ତାକୁ ଖୋଜି କିଛି ନଭାବି ସହଜ ଭାବେ ସଫା କରି ଦେଇଥିଲି । ଏ ଘଟଣାଟି କିନ୍ତୁ ତାଙ୍କୁ ଏତେ ଭାବ ବିହ୍ୱଳ କରି ଦେଇଥିଲା ଯେ ମତେ କହିଲେ , "ତୁ ମତେ ଋଣୀ କରିଦେଲୁ । ଯୋଉଟା ମୋ ବୁଢ଼ାବେଳେ କରିବା କଥା ସେଇଟା ଏବେଠୁ କରିଦେଲୁ । ତୁ କୋଉ ଜନ୍ମରେ ମୋ ବୋଉ ଥିଲୁ ।" ସେତେବେଳେ ମୁଁ ସପ୍ତମ ପଢୁଥିଲି ।

ତାଙ୍କୁ ଛୋଟବେଳୁ ଦେଖିଛି ଭାରି ଭାବପ୍ରବଣ । ମୋର ଯେତେବେଳେ ପଞ୍ଚମ ଶ୍ରେଣୀ, ମା ମରିଗଲା । ସେହିବର୍ଷ ହିଁ ମୋର D.M. School ରେ ନାଁ ଲେଖାହେଲା । ଆମେ ଭାଇଭଉଣୀ ବାପାଙ୍କ ପାଖରେ ରହିଲୁ । କିନ୍ତୁ କିଛିଦିନ ପରେ ବାବୁ ବୋଉକୁ ଛାଡ଼ି ରହିନପାରି ବୋଉ ପାଖକୁ ପଳାଇଲା । ମତେ ପଚରାଯିବାରୁ ମୁଁ କହିଲି, "ବାପାଙ୍କ ବୋଉ ମରିଯାଇଛି । ତାଙ୍କ ମନ କେତେ କଷ୍ଟ ହେଉଥିବ । ମୁଁ ତାଙ୍କୁ ଛାଡ଼ିଯିବି ନାହିଁ ।" ମୁଁ ଏକା ବାପାଙ୍କ ପାଖରେ ରହିଲି । ବାପା କିନ୍ତୁ କିଛି ଯତ୍ନ ନିଅନ୍ତି ନାହିଁ । ଆମର ପାଖଘରେ ରଶ୍ମି ମାଉସୀଙ୍କ ଘରେ ମୁଁ ପ୍ରାୟ ଥାଏ । ବେଳେବେଳେ ବାପା ଫେରିଲାବେଳକୁ ମୁଁ ଶୋଇପଡ଼ିଥାଏ । "ଛୁଆଟା ତ ଶୋଇପଡ଼ିଛି, ଶୋଇଥାଉ" ବୋଲି କହିଲେ ବି ବାପା ଶୁଣନ୍ତିନି । କହନ୍ତି, "ନା ଝିଅ ନଗଲେ ମତେ ରାତିରେ ନିଦ ହେବନି ।" ଶୋଇବା ଅବସ୍ଥାରେ ବି ମତେ ଘରକୁ ନେଇଆସନ୍ତି । ଥରେ ମନଖରାପ କରି ବସିଥାଏ । ବାପା କାରଣ ପଚାରିଲେ । କହିଲି, "ବୋଉ କଥା ମନେ ପଡୁଛି" । ମତେ କହିଲେ, "ତୋର ତ ଯାହାହେଲେ ବି ବୋଉ ଅଛି । ତୁ ଚିଠି ଦେଲେ ତୋ ବୋଉ ତୋ ପାଖକୁ ପଳାଇ ଆସିବ । କିନ୍ତୁ ମୁଁ ଯେତେ ଚିଠି ଦେଲେ ବି ମୋ ବୋଉ ଆଉ କେବେ ବି ମୋ ପାଖକୁ ଆସିବନି ।" ଯା ପରଠୁ ଆମ ଘରେ ଆମର ସାଆନ୍ତ ଓ ମା କଥା କେବେ ବି ପଡ଼େନାହିଁ । ତା ପରବର୍ଷ ବାବୁ ବି D.M. School ରେ ପଢ଼ିଲା । ଆମେ ସାଙ୍ଗ ହୋଇ ରହିଲୁ । ସେତେବେଳେ ବାପା ଆମକୁ ବହୁତ ଅବହେଳା କରିଛନ୍ତି । ନିଜ ଘରପ୍ରତି ତ ମୋଟେ ନିଘା ନଥାଏ । ଖାଲି ବାହାର ଲୋକଙ୍କ ଚିନ୍ତା । କିନ୍ତୁ ସେହି ବାପା, ମୁଁ ଯେତେବେଳେ ବଡ଼ ହେଲି, ଘରକାମ କରିବା ମୋ ପକ୍ଷେ ଆଦୌ କଷ୍ଟ ନଥିଲା, ସେତେବେଳେ ସେ ମତେ ପ୍ରତ୍ୟେକ କାମରେ ସାହାଯ୍ୟ କରନ୍ତି । ସକାଳୁ ଉଠି ଘର ଖରକି ଦିଅନ୍ତି, ବିଛଣା ଭାଙ୍ଗି ରଖି ଦିଅନ୍ତି, ପରିବା କାଟୁଥିଲେ

ଚୋପା ନେଇ ଫୋପାଡ଼ି ଦିଅନ୍ତି, ଆଳୁ ସିଝାଇଥିଲେ ଚ୍ଛେପା ଛଡ଼ାଇ ଚକଟି ଦିଅନ୍ତି ଇତ୍ୟାଦି ଇତ୍ୟାଦି । ନିଜ ଲୁଗାପଟା ନିଜେ କାଚନ୍ତି । ଆଶ୍ଚର୍ଯ୍ୟ ପ୍ରକାର ପରିବର୍ତ୍ତନ ।

ଗଛ ମାନଙ୍କରେ କୁଣ୍ଡରୁ ବୋହି ବୋହି ପାଣି ଦିଅନ୍ତି । ଟିକେକରେ ଝାଳ ବାହାରେ । ମତେ ଆସି କହନ୍ତି, "ଦେଖ୍ ମୁଁ ତୋର କେତେ କାମ କରିଦେଲି ।" ଆଉ ମୁଁ ଯଦି ସେମିତି କାମ କରି ତାଙ୍କୁ ଯାଇ କୁହେ, ସେ ମତେ କହନ୍ତି, "କାହା ଝିଅ ତୁ ?" ଆମେ ସାଙ୍ଗ ହୋଇ ଚ୍ଛ ପିଉ। ଖାଲି ସମୟଥିଲେ ତାସ୍ ଖେଳୁ । ସମ୍ପର୍କଟା ଏମିତି ଯେ ଭାଷାରେ ବୁଝାଇ ହେବନି । ଅତି ନିବିଡ଼, ଅତି ଆତ୍ମୀୟ । ବାପା ବାହାରୁ ଆସିଲେ ବୋଲି ଜଣା ପଡ଼ିଯିବ । ଗେଟ୍ ବାହାରୁ ଡାକି ଡାକି ଆସିବେ "ବୁଢ଼ି, ମା ଲୋ ।" ମୁଁ ବେଳେବେଳେ ଭୀଷଣ ରାଗେ । କହେ, "ଏଠି ଲୋକେ କ'ଣ ଭାବୁଥିବେ ? ଆଉ କ'ଣ କାହାର ଝିଅ ଅଛି ନା ତମର ଖାଲି ଏକୁଟିଆ ?" ସେ କିଛି କହନ୍ତିନି କି ଏ ପ୍ରକୃତି ବି ବଦଳେନି ।

ଅର୍ଥାଭାବର କଷ୍ଟ ଭୋଗୁଥିଲେ ମଧ୍ୟ ନିଜର ସ୍ୱାଭୀମାନ କେବେ ହରାଇ ନାହାନ୍ତି । ଆମ ମାନଙ୍କୁ ମଧ୍ୟ କେମିତି ଶିଖାଇଛନ୍ତି ଜାଣିନି, ଆମେ ବି କେବେ ଧନ ବା କ୍ଷମତା ପ୍ରତି ଲାଳାୟିତ ହୋଇନୁ । ନିଜକୁ କେବେ ଛୋଟ ବୋଲି ବିଚ୍ଛର ମଧ୍ୟ ମନକୁ ଆଣିପାରିନୁ । ବାପା କହନ୍ତି, "ରାସ୍ତାରେ ମୁଣ୍ଡ ଟେକି ଚ୍ଛଲିବୁ । ବଡ଼ ପାଟିରେ ନିର୍ଭୟରେ କଥାବାର୍ତ୍ତା କରିବୁ । ବକ୍ତୃତା ଦେବାବେଳେ ଭାବିବୁ ଯେ ଏମାନେ କିଛି ଜାଣି ନାହାନ୍ତି । ମୁଁ ଯାହା କହିବି ଏମାନେ ତାହା ଶୁଣିବେ । ତେବେ ଯାଇ ଭଲ ବକ୍ତୃତା ଦେଇପାରିବୁ ।"

ବାପାଙ୍କୁ ଦେଖିଛି ବିଶେଷକରି ଝିଅମାନଙ୍କୁ ଭାରି ଭଲପାଆନ୍ତି । ଯୋଉଠୁ ଶୁଣନ୍ତି ଝିଅମାନେ କିଛି ଭଲକାମ କରିଛନ୍ତି, ଭାରି ଖୁସି ହୁଅନ୍ତି । କହନ୍ତି "ଝିଅମାନେ ଜୁଡୋ, କରାଟେ ଶିଖିବା କଥା । କିଛି ନହେଲେ ବି ଟାଉନ୍ ବସ୍‌ରେ ଭିଡ଼ ଠେଲି ସ୍କୁଲ୍ କଲେଜରେ ଯିବା ଆସିବା କରିପାରିବେ ତ ।" ମୋର ସବୁ ସାଙ୍ଗ ମାନଙ୍କୁ କହନ୍ତି ସେମାନେ ସବୁ ମୋ ଝିଅ । ନିର୍ଦ୍ଦିଷ୍ଟ ଭାବେ ମୋ ସାଙ୍ଗମାନଙ୍କ ନାଁ ମନେରଖନ୍ତି । ସାଙ୍ଗମାନଙ୍କ ସହ ହେଉଥିବା ଅତି ଛୋଟ ଛୋଟ କଥା ମଧ୍ୟ ମୁଁ ତାଙ୍କ ସାଙ୍ଗେ ଆଲୋଚନା କରେ । ହଷ୍ଟେଲରେ ଥିବାବେଳେ ମୋ ରୁମ୍‌ପିଲାଙ୍କ ସାଙ୍ଗେ ମନୋମାଳିନ୍ୟ ବିଷୟରେ କହେ । ବାପା କେବେ ବି ମୋ କଥାକୁ ବେଖାତିର କରନ୍ତିନି । ମନଦେଇ ଶୁଣନ୍ତି । ସମାଧାନର ବାଟ ବତାନ୍ତି । କଲେଜ ପଢ଼ିଲାବେଳକୁ ବାପା ମୋର ପୁରା ସାଙ୍ଗ । କୋଉ ସାଙ୍ଗ ମତେ ଚିଠି ଦେଇଛି, ଚିଠିରେ କ'ଣ ଲେଖିଛି ସେ ସବୁ ଶୁଣନ୍ତି । କିନ୍ତୁ କେବେ ବି ଆମର ବ୍ୟକ୍ତିଗତ ଚିଠି ବାପା ଖୋଲିନାହାନ୍ତି । ଅତି ଗୁରୁତର ମନଦୁଃଖ ଥିଲାବେଳେ ବି ଥଟ୍ଟାରେ କଥାଟାକୁ ହାଲ୍‌କା କରିଦିଅନ୍ତି । ମୋର ରୁମ୍‌ରେ ଜଣେ ଅପା ଥିଲେ । ସେ ମୋତେ ଭାରି ଭଲପାଉଥିଲେ ଆଉ ମୁଁ ବି । ଥରେ ଖରାଛୁଟିରେ ତାଙ୍କ କଥା ମନେପଡ଼ି ଭାରି ମନ ଖରାପ ହେଲା । (ସେତେବେଳେ ହଷ୍ଟେଲ ଜୀବନରେ ଆମର ସେମିତି ସବୁ ହେଉଥିଲା । ସାଙ୍ଗମାନଙ୍କୁ

ଛାଡ଼ି ମୁହୂର୍ତ୍ତେ ବି ରହି ହେଉନଥାଏ ।) ବାପା ମୋତେ ବୁଝାଇବାକୁ ଯାଇ କହିଲେ, "ତୁ ଜମା ବ୍ୟସ୍ତ ହ ନା । ତୁ ତୋ ଅପାକୁ ଛାଡ଼ି ରହିପାରିବୁନି ମୁଁ ଜାଣିଛି । ସେଥିପାଇଁ ତୋ ଅପା ଯାହାକୁ ବାହାହେବ, ମୁଁ ତା'ରି ସାଙ୍ଗରେ ତୋର ବାହାଘର କରିଦେବି । ଦୁହେଁ ସାଙ୍ଗ ହୋଇ ସବୁବେଳେ ରହିବ ।" ମୁଁ ବୁଝିବି କଣ, ଆହୁରି ଜୋରରେ ରାଗିକି କହିଲି, "କାହିଁକି କହିଲ ଅପାର ବରକୁ ବାହାହେବାକୁ? କାହିଁକି କହିଲନି ଅପା ଦିଅରକୁ ବାହା କରିବ ବୋଲି ?" ଏମିତି ଆମର କଥାବାର୍ତ୍ତା । ଏହି ଭୁବନେଶ୍ୱରରେ ହଷ୍ଟେଲରେ ଥିଲେବି ବେଳେବେଳେ ଚିଠି ଦିଅନ୍ତି । ଛୋଟ ଛୋଟ କଥା ଚିଠିରେ ଲେଖନ୍ତି । ଟଗର ଗଛରେ ଫୁଲ ହେଲାଣି, ଅମୃତଭଣ୍ଡା ଗଛ ଭଲ ବଢୁଛି, ତୁ ଆସିବୁ ବୋଲି ଘର ସଫା କରିଦେଇଛି, ଇତ୍ୟାଦି ଇତ୍ୟାଦି । ସମ୍ପର୍କର ପରିଭାଷା ଓ ବ୍ୟକ୍ତିଗତ ଆଦାନପ୍ରଦାନକୁ ବୁଝିପାରୁ ନଥିବା ମୋର କେତେକ ସାଙ୍ଗ ଏ ଚିଠି ପଢ଼ି ହସନ୍ତି । ମୋର କିନ୍ତୁ ବାପାଙ୍କ ସହ ବନ୍ଧୁତା ଆହୁରି ନିବିଡ଼ ହୁଏ । ଅନେକ ସମୟରେ ଦେଖିଛି ମନର କଥା ଖୁବ୍ ସରଳ ଭାବେ ଖୋଲି କହିଦିଅନ୍ତି । ମୁଁ ବେଳେବେଳେ ଏଠିକି ରବିବାର ଆସି ସୋମବାର ଯିବାକୁ ବାହାରେ । ତାଙ୍କର ଇଚ୍ଛାନଥାଏ । ମତେ ଯିବାକୁ ମନା କରନ୍ତି । କ୍ଲାସ୍ ଅଛି କହିଲେ କହନ୍ତି, "ଗୋଟେ ଦିନ ରହିଯା । ଦିନେ କ୍ଲାସ୍ ନକଲେ କ'ଣ ଚଳିବନି ?" ମୁଁ କିନ୍ତୁ ରହେନି । ହଷ୍ଟେଲ୍ ପଳାଏ ଆଉ ସାରାଦିନ କାନ୍ଦି କାନ୍ଦି କଟାଏ । ବାପାଙ୍କ ନିଃସଙ୍ଗତାକୁ ବୁଝେ । କିନ୍ତୁ କିଛି କରିପାରୁ ନଥାଏ । ଭାରି ବେଦନାସିକ୍ତ ସେ ଦିନସବୁ । ମୁଁ ଗଲାବେଳେ କିନ୍ତୁ ବାପା ମୋତେ ରାଜମହଲ ଛକଯାଏ ଚାଲି ଚାଲି ଛାଡ଼ିବାକୁ ଯାଆନ୍ତି । ବାପାଙ୍କୁ ଏକା ଛାଡ଼ି ଯିବାପାଇଁ ଭାରି କଷ୍ଟ ଲାଗେ । ରାସ୍ତା ସାରା ଆମେ ଦିଜଣ ଚୁପ୍ ଚାପ୍ ଚାଲିଥାଉ । ତା ପରଦିନ ସକାଳୁ ସକାଳୁ ମୁଁ ଦାନ୍ତଘଷି ସାରିଲାବେଳକୁ ଦେଖେ ବାପା ଚାଲି ଚାଲି ଯାଇ ହଷ୍ଟେଲ୍‌ରେ ହାଜର (ରମାଦେବୀ କଲେଜ ହଷ୍ଟେଲ୍) । କହନ୍ତି, "କାଲି ତୁ ପଳାଇ ଆସିଲୁ । ରାତିସାରା ମୋଟେ ଭଲ ଲାଗିଲାନି । ଭୋରରୁ ଉଠି ତତେ ଦେଖାକରିବାକୁ ଚାଲିଆସିଲି ।" ଏମିତି ଥିଲେ ମୋ ପାଇଁ ମୋ ବାପା । କେବେ ଦିନେ ପାଠପଢ଼ା କେମିତି ଚାଲିଛି ପଚାରିନାହାନ୍ତି । କେବଳ ଦେହ ପା କଥା ପଚାରନ୍ତି । ତାପରେ ଅନ୍ୟାନ୍ୟ ଛୋଟ ଛୋଟ ଯାଉ ସ୍ୟାଉ କଥା ପଡ଼େ ।

ବିଶେଷ ଗୁଣ ହିସାବରେ ମୁଁ ଯାହା ଜାଣିଛି ସେ କେବେ କାହା ବିରୋଧରେ କହିବାର ବା ଶୁଣିବାର ଆମେ ଜାଣିନୁ । ଆମେ ବେଳେବେଳେ ସେମିତି କିଛି ଆଲୋଚନା କରୁ କିନ୍ତୁ ତାଙ୍କ ଅନୁପସ୍ଥିତିରେ । କେବେ ଜୋର କରି କିଛି କାମ ବରାଦ କରିନାହାନ୍ତି । ପାନ ଖଣ୍ଡେ ଖାଇବାକୁ ଇଚ୍ଛାଥିଲେ ବି ବାବୁକୁ ପଠାନ୍ତି ନାହିଁ । ପଚାରନ୍ତି, "ତୋର ବାହାରକୁ ଯିବାର ଅଛି କି ?" ବାବୁ ଯଦି ହଁ କହେ ତେବେ କହନ୍ତି "ପାନ ଖଣ୍ଡେ ଆଣିଥିବୁ ।"

ଆମ ଘରେ ଆଉ ଗୋଟେ ଭଲକଥା ବୋଲି ମୁଁ ଭାବେ ଯେ, ବାପା, ବୋଉ ଉଭୟ ତାଙ୍କର ସାଙ୍ଗସାଥୀଙ୍କ ବିଷୟରେ ଆଲୋଚନା କରନ୍ତି । ସେମାନଙ୍କର ସବୁ ଭଲକଥା

ଆମ ଘରେ ପଡ଼େ । କେବେ କାହା ବିଷୟରେ ଖରାପ ପଦେ ଶୁଣିନୁ । ଫଳରେ ସାଙ୍ଗମାନଙ୍କୁ ଆମେ ନଦେଖିଲେ ମଧ୍ୟ ସେମାନଙ୍କ ବିଷୟରେ ସବୁ ଜାଣିଥାଉ । ସାଙ୍ଗମାନେ ସବୁ ଆମର 'ଦାଦା' ନହେଲେ 'ମାମୁ' । କେହିବି 'Uncle' ବା ମଉସା ନୁହନ୍ତି ।

ସ୍ନେହ ଭାବଟିକୁ ଏତେ ଅଧିକ ନିବିଡ଼ ଭାବେ ରଖିପାରିଥାନ୍ତି ଯେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଥରେ ତାଙ୍କର କିଛି ଟଙ୍କା ପଇସା, ଘଣ୍ଟା ଇତ୍ୟାଦି ହେରିଗଲା । ସେଥିରେ ମୋ ଶାନ୍ତିମାଉସୀ ଦେଇଥିବା ଗୋଟେ ଛୋଟ ଛତାଟିବି ଗଲା । ତାଙ୍କର ଆର୍ଥିକ ସ୍ଥିତି ଅନୁସାରେ ହେରି ଯାଇଥିବା ଜିନିଷର ମୂଲ୍ୟ ବହୁତ । କିନ୍ତୁ ସେଥିକି ତାଙ୍କ ମନ କିଛି କଷ୍ଟନାହିଁ । ଅଥଚ ମାଉସୀ ଦେଇଥିବା ଛତାଟି ପାଇଁ ବହୁଦିନ ଯାଏ ମନକଷ୍ଟ କଲେ । ମୁଁ ଦେଖିଛି ଆଦରରେ ଦେଇଥିବା ଉପହାରଟିର ମୂଲ୍ୟ ତାଙ୍କ ପାଇଁ କେତେ ବେଶୀ ।

ତାଙ୍କରି ସାଙ୍ଗମାନଙ୍କଠୁ ଶୁଣିଛି ତାଙ୍କର ଅସାଧାରଣ ପ୍ରତିଭା ବିଷୟରେ । ମୋ ବିଚାରରେ ବୋଧହୁଏ ସେ ତାଙ୍କର ଅତି ଉଚ୍ଚ ଚିନ୍ତାପାଇଁ ଚିନ୍ତାକ୍ଷେତ୍ରରେ ହୁଏତ ଏକୁଟିଆ ହୋଇଯାଇଥିବେ । ଅର୍ଥାଭାବ ମୁଖ୍ୟ ପ୍ରତିବନ୍ଧକ ହେଲା ତାଙ୍କର ଯୋଜନାକୁ କାର୍ଯ୍ୟକାରୀ କରିବାପାଇଁ । ବର୍ତ୍ତମାନ ସାମ୍ବାଦିକତାର ପରିସରକୁ ଦେଖିଲେ ଆଜିକୁ ତିରିଶ ବର୍ଷ ତଳର କଥାକୁ ବୁଝିହେବ ନାହିଁ । ସେତେବେଳେ ଏତେ ସୁଯୋଗ ନଥିଲା । ତାଛଡ଼ା ବାପା ଅତ୍ୟନ୍ତ ସ୍ୱାଧିନଚେତା, ସ୍ୱାଭିମାନୀ ମଣିଷ । କାହା ପାଖରେ କାମ କରିବାକୁ ପସନ୍ଦ କରିନଥିବେ । ଦିଲ୍ଲୀରେ ସେ ତାଙ୍କ ଉପଯୁକ୍ତ କାମ କରିବାର ସୁଯୋଗ ପାଇଥିଲେ । ସାମ୍ବାଦିକତା କ୍ଷେତ୍ରରେ ନାଁ କରିବା ସହ ରୋଜଗାର ବି ଭଲଥିଲା । କିନ୍ତୁ ଜନ୍ମମାଟିର ଆକର୍ଷଣ ଯୋଗୁଁ (ଆମେ ଥରେ ଏକଥା ପଚାରି ବୁଝିଥିଲୁ) ଓଡ଼ିଶାରେ କିଛି କରିବାପାଇଁ ଦିଲ୍ଲୀ ଛାଡ଼ି ଆସିଥିଲେ । ଅର୍ଥାଭାବ ସହ ଭାବପ୍ରବଣ ଚରିତ୍ର । ସେଥିରେ ତାଙ୍କ ବାପାଙ୍କର ଆକସ୍ମିକ ମୃତ୍ୟୁ । ଏସବୁକୁ ମୁକାବିଲା କରିପାରିଲେନି । ପାରିବାରିକ ଜୀବନରେ ପୁରା ଏକା । ଅତି ମାତ୍ରାରେ ହତାଶା ହୋଇ ହୁଏତ ମଦ୍ୟପାନର ଆଶ୍ରୟ ନେଇଥିବେ । ଏସବୁ ମୋର ଶିଶୁ ଅବସ୍ଥାର କଥା । କିନ୍ତୁ ମୋର କହିବା କଥା ବାପାଙ୍କ ମଦ୍ୟପାନ ଆମ ସମସ୍ତଙ୍କୁ ଖରାପ ଲାଗୁଥିଲା । କିନ୍ତୁ କେବେବି ଅସଂଗତ କଥାବାର୍ତ୍ତା, ଚାଲିଚଳନ ଆମେ ଦେଖିନୁ କି କାହାରିଠାରୁ ଶୁଣିନୁ ମଧ୍ୟ । ଯଦିଓ ଆମର ପଡ଼ୋଶୀମାନେ ଏ ବିଷୟରେ ଅବଗତ ଥିଲେ, ବରଂ ସେହି ସମୟରେ ଯାହାକିଛି ବିପ୍ଳବୀ କବିତା ଶୁଣିବାର ସୌଭାଗ୍ୟ ମିଳିଛି । ଏଥିପାଇଁ ମୋଠୁ ଗାଳି ଶୁଣିଛନ୍ତି । ଏପରିକି ମୋଠୁ ମାଡ଼ ବି ଖାଇଛନ୍ତି । କିନ୍ତୁ ସେଥିପାଇଁ କେବେ ଦୁଃଖ କରିବାର ମୁଁ ଦେଖିନାହିଁ । ବରଂ କହନ୍ତି, "ବୈକୁଣ୍ଠ ବିଶ୍ୱାଳ ସାମନାରେ ଠିଆହେବାର ସାହସ ଆଜି ପର୍ଯ୍ୟନ୍ତ କାହାର ନଥିଲା । କିନ୍ତୁ ଆଜି ତୁ ତା ମୁହଁରେ ଜବାବ ଦେଉଛୁ ।"

ବଡ଼ ହେବାପରେ ମୁଁ ବିଚାର କରି ଦେଖିଛି ଯେ ମଦ୍ୟପାନଟିକୁ ତାଙ୍କର ଏକ ବଡ଼ ଦୁର୍ବଳତା ବୋଲି ପ୍ରାୟ ସମସ୍ତେ ଭାବୁଥିଲେ । କିନ୍ତୁ ଟିକେ ନିରିଖେଇ ଦେଖିଲେ,

ଜଣାପଡ଼ିବ ଯେ ପ୍ରକୃତରେ ଅର୍ଥାଭାବ ଯୋଗୁଁ ହିଁ ଏଇଟା ବଡ଼ ପରି ଦିଶେ । ଯଦି ତାଙ୍କର ବହୁତ ପଇସା ଥାଆନ୍ତା, ତେବେ ସମସ୍ତେ ଭାବିଥାନ୍ତେ ଯେ ଏଇଟା ବଡ଼ ଲୋକଙ୍କର ଗୋଟେ ସଉକ (ଠିକ୍ ଯେମିତି ଅନ୍ୟ ଅନେକଙ୍କ ବିଷୟରେ ଏହି ଧାରଣା ବଳବତ୍ତର ରହିଛି ।) ମୁଁ ଦେଖିଛି ଆମେ ଯେତେବେଳେ ଏକାଠି ଥାଉ, ବାପା ମୋଟେ ପିଅନ୍ତିନି । କିନ୍ତୁ ନିଃସଙ୍ଗ ଜୀବନରେ ଆଉ ଉପାୟ କ'ଣ ? ବାପା ଅନେକଥର ଜୀବନରେ ମଦ ଛାଡ଼ିଛନ୍ତି । ଏଇଟା ତାଙ୍କପାଇଁ କିଛି ବଡ଼କଥା ନଥିଲା । ଏ ସତ୍ୟଟିକୁ ବିଳମ୍ବରେ ହେଲେ ମଧ୍ୟ ମୁଁ ବୁଝିଥିଲି ଏବଂ ମୋ ବୋଉକୁ ମଧ୍ୟ ବୁଝାଇ ଦେଇଥିଲି ।

ବାପା ମୋତେ କହନ୍ତି, "ଏମିତି ଗୋଟେ କାମ କରିବୁ ଯେମିତି ଜୀବନସାରା ସେ କାମ କରିପାରୁଥିବୁ । ଆଉ ସବୁବେଳେ ଲୋକଙ୍କର ଯିବା ଆସିବା ଲାଗି ରହିଥିବ ।" ସବୁବେଳେ ଭାବୁଥିଲି ମୁଁ ପାଠପଢ଼ା ସରିଲେ ନିଶ୍ଚୟ କିଛି ଭଲ କାମ କରିବି ଏବଂ ବାପାଙ୍କୁ ମଧ୍ୟ ତାଙ୍କ ଇଚ୍ଛା ମୁତାବକ କାମ ଯୋଗାଇଦେବି । କିନ୍ତୁ ମୋ ଆଶା ହଠାତ୍ ଅଧାରେ ରହିଗଲା । ତାଙ୍କ ପାଇଁ କିଛି ବି କରିପାରିବାର ସୁଯୋଗ ମତେ ମିଳିଲାନି । ମୋ ପ୍ରତି ଏତେ attachment ! ଦେହ ଖରାପ ହେଲେ ବି ମୋତେ କହନ୍ତିନି । ଥରେ ପ୍ରବଳ କାଶ ହେଉଥାଏ । ମୁଁ କହିଲି "ଯାଇ ଡାକ୍ତର ଦେଖାଇଆସ ।" ମତେ କହିଲେ "ତତେ ଛୁଆବେଳେ ଯୋଉ କାର୍ଶ ହେଉଥିଲା, ତାଠୁ କ'ଣ ଇଏ ବେଶୀ ?"

ମୋ ପାଇଁ ବାପା ଏମିତି ଥିଲେ ଯେ ଯାହାକୁ ପୁରା ବିଶ୍ୱାସ କରିହେବ । ପୁରାପୁରି ନିର୍ଭର ବି କରାଯାଇପାରିବ । ମତେ କେଜାଣି କାହିଁକି ଲାଗେ ଯେ ବାପା ଯାହା କହନ୍ତି ପୁରା ଠିକ୍ । ମୁଁ ମୋର ସମସ୍ତ ଜିଜ୍ଞାସା ଓ ଦ୍ୱନ୍ଦ୍ୱର ସମାଧାନ ପାଇଁ ପୁରା ନିର୍ଭର କରୁଥିଲି । ଯେଉଁଥିପାଇଁ ଏବେ କୌଣସି ସମସ୍ୟା ବା ଦ୍ୱନ୍ଦ୍ୱ ମନକୁ ଆସିଲେ ମୁଁ ସାହାରା ଖୋଜି ପାଉନି । ଅନେକ ଦୁଃଖକଷ୍ଟ ଭିତରେ ବି ବାପାଙ୍କ ସହ ଆମ ପରିବାରର ଜୀବନର ସ୍ୱାଦ ଥିଲା ନିଆରା । ଅନେକ ଝଡ଼ ଝଞ୍ଜା ଭିତରେ ବି ଆମ ବସାଟି ନିରାପଦ ଥିଲା । ନିଜ କଥା ନିଜେ ଠିକ୍‌ରେ ବୁଝି ପାରନ୍ତିନି ବୋଲି ତାଙ୍କର ଯତ୍ନ ବି ନେଉଥିଲି । ରାତିରେ ଧୋତି ପଞ୍ଜାବୀ ସଫାକଲେ ବୋଉ ରାଗେ । ତଥାପି ମୁଁ କରେ । ଶୀତଦିନେ ରାତିରେ ଅନେକଥର ମୋ ନିଦ ଭାଙ୍ଗିଯାଏ । କାଳେ ବାପାଙ୍କ କମ୍ବଳ ଦେହରୁ ବାହାରି ଯାଇଥିବ କି ? ଆଜି ମୁଁ ବାହାହୋଇ ଗୋଟେ ଛୁଆର ମା ମଧ୍ୟ ହୋଇ ସାରିଲେଣି । ହେଲେ ତାଙ୍କ ପ୍ରତି ଯେଉଁ attachment, ତାହା ମୁଁ ଆଉ କେଉଁଠି ଅନୁଭବ କରି ପାରିନାହିଁ । ବେଳେବେଳେ ଲାଗେ, ବୋଧେ ବାପା ମତେ ବାହାକରି ବିଦା କରିପାରି ନଥାନ୍ତେ । ସେଥିପାଇଁ ବୋଧେ.. ଏମିତି ବାପା ମତେ ଜନ୍ମେ ଜନ୍ମେ ମିଳନ୍ତୁ ଏତିକି କାମନା ।



ରେଭେନ୍ସା କଲେଜ୍‌ର ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ

# ଅଭିମତ

"ଶ୍ରୀମାନ୍ ବୈକୁଣ୍ଠଙ୍କ ମାଟ୍ରିକ୍ ଫଳ ସଂଗେ 'ଉଦ୍‌ବୋଧନୀ' ପ୍ରକାଶିତ ହୋଇଅଛି; ପରୀକ୍ଷାରେ ସେ କୃତିତ୍ୱ ଅର୍ଜନ କରିଅଛନ୍ତି; 'ଉଦ୍‌ବୋଧନୀ' ରେ ସେ ରସୋତ୍ତୀର୍ଣ୍ଣ ହୋଇ ଅଛନ୍ତି କି ନାହିଁ, ରସିକ ଗ୍ରାହକମାନେ ତାହା ବିଚାର କରିବେ ।

'ଉଦ୍‌ବୋଧନୀ' ଜଣେ ଅଳ୍ପ ବୟସ୍କ ଛାତ୍ରର ଲେଖା । ରାଜନୀତି ତାଙ୍କ କବିତାକୁ ଆଚ୍ଛନ୍ନ କରିଛି, ଗଦ୍ୟର ଆକ୍ରମଣ ମଧ୍ୟ ଅଳ୍ପ ନୁହେଁ; ତଥାପି ପ୍ରତିଭାର ସଂକେତ କେତେକ କବିତାରୁ ସ୍ପଷ୍ଟଭାବେ ମିଳିଥାଏ ; ଯେପରିକି,

ବନ୍ଦଇ ମୁଁ ଉତ୍କଳର ନାମ ଧାମ ହୀନ
ବାରଶହ ଅଜ୍ଞାତ ସ୍ଥପତି
ଯାହାଙ୍କ ଅମର କୀର୍ତ୍ତି ଉତ୍କଳ ଜନନୀ
ଆଜି ସୁଦ୍ଧା ରଖିଚି ସାଇତି
କିନ୍ତୁ ଏ ଦେଶର ଏହି ମୂକ ଇତିହାସ
ଜାଣେନା ଶିଳ୍ପୀର ପରିଚୟ ।

ଆଦ୍ୟ ତାରୁଣ୍ୟରେ ବିଶ୍ୱଚିନ୍ତା କବିଙ୍କ ମନରେ ସ୍ଥାନ ପାଇଛି । ଏହା ଏକ ଶୁଭ ଲକ୍ଷଣ – ସବୁରି ପାଇଁ ମୁଁ ଲଭିଛି ଜନମ ବିରାଟ ଏ ଧରା ପରେ । ପୁସ୍ତକଟି ଆକାରରେ କ୍ଷୁଦ୍ର ; କିନ୍ତୁ ଏହାକୁ ଅବହେଳା କରି ହେବନାହିଁ ।

'ଉଦ୍‌ବୋଧନୀ' ପାଠକକୁ ଉଦ୍‌ବୋଧିତ କରିବ, ମୋର ବିଶ୍ୱାସ । ପରିଶେଷରେ ବୈକୁଣ୍ଠଙ୍କୁ ମୋର ଆଶୀର୍ବାଦ ତାଙ୍କ ଲେଖନୀ ଜୟଯୁକ୍ତ ହେଉ ।'

କୁଞ୍ଜବିହାରୀ ଦାଶ
ତା ୧୨.୦୬.୬୭ ରିଖ



# ବାପାଙ୍କ ସହ ଯୋଗାଯୋଗ

ଚିନ୍ମୟ ବିଶ୍ୱାଳ

ବାପାଙ୍କ ଘନିଷ୍ଠ ବନ୍ଧୁ ନାଟ୍ୟ ନିର୍ଦ୍ଦେଶକ ଦୋଳଗୋବିନ୍ଦ ରଥ ମତେ ଥରେ ପଚାରିଥିଲେ, "ବାପାଙ୍କ ସହ ଯୋଗାଯୋଗ କିପରି ଅଛି ?" ମୁଁ ସେତେବେଳେ ଦଶମ ଶ୍ରେଣୀରେ ପଢୁଥିଲି । ଆଉ ବାପାଙ୍କ ନିକଟରେ ରହୁଥିଲି । ତେଣୁ ଦୋଳ ଦାଦା ସମ୍ପର୍କ ଶବ୍ଦ ବଦଳରେ 'ଯୋଗାଯୋଗ' ଶବ୍ଦ ପ୍ରୟୋଗ କରିବାଟା ଗୁରୁତ୍ୱପୂର୍ଣ୍ଣ ଥିଲା । ବାପାଙ୍କ ସହ ମୋର ଯୋଗାଯୋଗ ମୋର ସାଙ୍ଗସାଥୀ ମାନଙ୍କର ସେମାନଙ୍କ ବାପାଙ୍କ ସହିତ ରହିଥିବା ସମ୍ପର୍କରୁ ଭିନ୍ନ ପ୍ରକାରର ଥିଲା ବୋଲି ମୋର ମନେହୁଏ । ମୋ' ବାପା ଜଣେ ଧରାବନ୍ଧା 'ବାପା' ନଥିଲେ । ସେ ଆମର ଆର୍ଥିକ ସାହାରା ତ ନଥିଲେ । ମାତ୍ର ତାହା ଗୁରୁତ୍ୱପୂର୍ଣ୍ଣ ନୁହେଁ । ଗୁରୁତ୍ୱପୂର୍ଣ୍ଣ ହେଉଛି ବାପା ମତେ ଓ ମୋର ଜୀବନକୁ କିଭଳି ଭାବରେ ପ୍ରଭାବିତ କରିଛନ୍ତି । ନିଜ ପୁଅକୁ ଅତିକମ୍ ବୟସରୁ ଇଚ୍ଛାନୁଯାୟୀ କାର୍ଯ୍ୟ କରିବାର ସ୍ୱାଧୀନତା ଦେବା ଛୋଟକଥା ନୁହେଁ । କ'ଣ ପଢୁଛୁ, କାହିଁକି ଏଟା ପଢୁଛୁ, କାହିଁକି ପଢୁନାହୁଁ, ପରୀକ୍ଷା ଆସିଲାଣି, କେତେ ମାର୍କ ରଖିଲୁ ଆଦି ପ୍ରଶ୍ନ ସେ କେବେ ପଚାରି ନାହାଁନ୍ତି । ମୋର କେଉଁଠିକି ଯିବାର ଇଚ୍ଛାହେଲେ ମୁଁ ତାଙ୍କୁ ପଚାରିକରି ଯାଏ ନାହିଁ । ଖାଲି ଗୋଟେ ଛୋଟ କାଗଜରେ କେତେବେଳେ ଫେରିବି ସେକଥା ଲେଖି ତାଲାରେ ଲଗାଇ ଦେଲେ ଯଥେଷ୍ଟ । ମୋର କିଛି ଚିଠିପତ୍ର ଆସିଲେ ତା' ଉପରେ ଦୃଷ୍ଟିପାତ ମଧ୍ୟ ନକରି ମୋ' ଟେବୁଲ୍ ଉପରେ ରଖି ଦିଅନ୍ତି । ସେ ବାହାରୁ ଆସିବାବେଳେ ଯଦି ମୋର ସାଙ୍ଗମାନେ ଆସି ଦାଣ୍ଡଘରେ ବସିଥିବେ, ତାଙ୍କ ସାମନାରେ ନ ଆସି କହନ୍ତି ପଛକବାଟଟା ଖୋଲି ଦେବାକୁ । କଲେଜ ପାଖରେ ବା ରାସ୍ତା ଘାଟରେ ମୁଁ ମୋ ସାଙ୍ଗମାନଙ୍କ ସହ 'ଖଟି' କଲାବେଳେ ସେ ଯଦି ଦୂରରୁ ଦେଖିପାରନ୍ତି, ତେବେ ଅନ୍ୟ ରାସ୍ତାରେ ଚାଲି ଯାଆନ୍ତି । ଆଉ ଯଦି ଅନ୍ୟ ରାସ୍ତା ନଥାଏ, ତେବେ ମୋତେ ନ ଚିହ୍ନିଲା ପରି ଚୁପ୍‌ଚାପ୍ ଚାଲିଯାଆନ୍ତି । ବିଡ଼ି ସରିଯାଇଥିଲେ ଆଣିବାକୁ ନ ପଠାଇ ପଚାରିବେ, "ତୋର ବାହାରକୁ ଯିବାର ଅଛି କି ? ଗଲେ ବିଡ଼ି କଠାଏ ଆଣିଥିବୁ" ।

ଆଉ ଗୋଟିଏ ଦୃଷ୍ଟିରୁ ମଧ୍ୟ ସେ ଥିଲେ ପ୍ରାୟ ଅନ୍ୟ ବାପା ମାନଙ୍କଠାରୁ ଅଲଗା । ସେ ଥିଲେ ମୋର ବୌଦ୍ଧିକ ସମ୍ବଳ (Intellectual resource) । ସମାଜ, ସାହିତ୍ୟ, ସଂସ୍କୃତି, ରାଜନୀତି, ଦର୍ଶନ ଆଦି ବିଷୟରେ ମୁଁ ଯାହା ଜାଣେ ତାହା ତାଙ୍କଠୁ ଶୁଣିକରି । ସଚ୍ଚି ରାଉତରା, ରବି ସିଂ, ମନମୋହନ ମିଶ୍ର, ଗୋଦାବରୀଶ ମହାପାତ୍ର ଆଦିଙ୍କର କବିତା; ସୁରେନ୍ଦ୍ର ମହାନ୍ତି, ଅଖିଳ ମୋହନ, ମନୋଜ ଦାସ ଆଦିଙ୍କ ଲେଖା ସମ୍ପର୍କରେ ମୋର ପରିଚିତିର ଉତ୍ସ ହେଉଛନ୍ତି ବାପା । ତାଙ୍କଠାରୁ 'କୋଣାର୍କେ' ଆଦି କବିତାର ଆବୃତି ଶୁଣି ମୁଁ ଗ୍ରନ୍ଥାଳୟରୁ କିଣିଥିଲି 'ପାଣ୍ଡୁଲିପି' । ନିଃସଙ୍ଗ ନିବାସରେ ପହଞ୍ଚିଥିଲି 'ଚରମପତ୍ର'ର କବି ରବି ସିଂଙ୍କୁ ସାକ୍ଷାତ କରିବାକୁ । ତାଙ୍କ ମୁହଁରୁ ଶୁଣି ଶୁଣି ମୋର ସାହିତ୍ୟ ଜ୍ଞାନ ସମୃଦ୍ଧ

ହୋଇଥିଲା । ଏକଦା ସ୍କୁଲ୍‌ରେ ଓଡ଼ିଆ ପରୀକ୍ଷାରେ ୧୦୦ ରୁ ୯୪ ନମ୍ବର ରଖି ଏକଦା ଇତିହାସ ସୃଷ୍ଟି କରିବା ସହ କ୍ରମାଗତ ଭାବେ ୯୦ରୁ ଅଧିକ ନମ୍ବର ରଖୁଥିବାର ଶ୍ରେୟ ମୁଁ ବାପାଙ୍କୁ ହିଁ ଦିଏ । ମୋର ରାଜନୈତିକ ଚେତନା ଓ ବିଚ୍ଛରର ଉତ୍ସ ମଧ୍ୟ ମୋର ବାପା ।

ବାପାଙ୍କ ସହ ମୋର କଥାବାର୍ତ୍ତା ବ୍ୟକ୍ତିଗତ ନହୋଇ ଅନେକ ସମୟରେ ନାନା ବିଷୟକୁ ବ୍ୟାପିଯାଏ । ତାଙ୍କଠାରୁ ଶୁଣୁଥିଲି ଅମର୍ତ୍ତ୍ୟ ସେନ୍, ପ୍ରଣବ ବର୍ଦ୍ଧନ୍, ସୁଖମୟ ଚକ୍ରବର୍ତ୍ତି, ଜୋଆନ୍ ରବିନ୍‌ସନ୍, ଏମ୍.ଏନ୍. ଶ୍ରୀନିବାସ୍ ପ୍ରଭୃତିଙ୍କର କାର୍ଯ୍ୟ ସଂକ୍ରାନ୍ତରେ । ହିନ୍ଦୀ ସାହିତ୍ୟ ଓ ସଂସ୍କୃତି ଜଗତର ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି ଓ ଦିଲ୍ଲୀର ବୁଦ୍ଧିଜୀବି ମାନଙ୍କ ସହ ମୁଁ ପରିଚିତ ହୋଇସାରିଥିଲି ସମାଜ ଶାସ୍ତ୍ରରେ ଏମ୍.ଏ. ପଢ଼ିବା ପାଇଁ ଦିଲ୍ଲୀ ସ୍କୁଲ୍ ଅଫ୍ ଇକୋନମିକ୍ସ ଯିବା ପୂର୍ବରୁ । ରାମ୍‌ଜାସ୍ କଲେଜ୍‌ର ଅଡିଟୋରିୟମ୍‌ରେ ହବିବ୍ ତନବୀରଙ୍କ ନିର୍ଦ୍ଦେଶନାରେ "ଚରଣ ଦାସ୍ ଚୋର" ନାଟକ ମଞ୍ଚସ୍ଥ ହେବାର ପୋଷ୍ଟର ଦେଖି ମୋର ସହପାଠୀମାନେ ଯୋଜନା କରୁଥିଲେ ଦେଖିଯିବାକୁ । ତା' ବିଷୟରେ କରୁଥିବା ଆଲୋଚନାରେ ମୁଁ ସେହି ନାଟକର ସାମାଜିକ-ଐତିହାସିକ ପୃଷ୍ଠଭୂମି ଓ ହବିବ ତନବୀରଙ୍କ କାର୍ଯ୍ୟ ସଂକ୍ରାନ୍ତରେ ଯେଉଁ 'ତଥ୍ୟଗର୍ଭକ ସ୍ପିଚ୍' ଦେଲି, ତାକୁ ଶୁଣି ଅଭିଭୂତ ମୋର ବନ୍ଧୁଗଣ ପଚ୍ଚରିଲେ 'ନାଟକ ନଦେଖି ଏସବୁ ଜାଣିଲୁ କେମିତି ?' "ବାପାଙ୍କ ମୁହଁରୁ ଶୁଣି," ମୁଁ ଉତ୍ତର ଦେଲି । ଜେ.ଏନ୍.ୟୁ.ରେ ଅକ୍ସ କିଛି ଦିନ ତଳେ ବସି ଜରୁରୀ କାଳୀନ ପରିସ୍ଥିତି ସଂକ୍ରାନ୍ତରେ ଆଲୋଚନା କଲାବେଳେ ଏକ ହିନ୍ଦୀ କବିତାର କିଛି ପଂକ୍ତି ମୁଁ ଶୁଣାଇବାରୁ ହିନ୍ଦୀ ସାହିତ୍ୟର ଜଣେ ଉଚ୍ଚକୋଟୀର ଗବେଷକ ବନ୍ଧୁ କାଗଜ କଲମରେ ତାକୁ ଉତାରି ନେଲେ । ପଚ୍ଚରିଲେ, "ମୈଁ ଇସ୍ କବିତାକେ ବାରେ ମେଁ ନହୀଁ ଜାନ୍‌ତା ଥା । ଆପ୍ କୋ କୈସେ ମାଲୁମ୍ ପଡ଼ା ?" ମୁଁ କହିଲି, "ମେରେ ପିତାଜୀନେ ବତାୟାଥା ।" "ୟାହାଁ ପ୍ରଫେସରୋଁ କୋ ଭି ମାଲୁମ୍ ନେହିଁ ହେଁ ଇସ୍ ବଢ଼ିବା କବିତାକେ ବାରେ ମେଁ," କହିଲେ ସେ ।

'ବୈକୁଣ୍ଠ ବାବୁଙ୍କ ପୁଅ' ବୋଲି ସାମ୍ବାଦିକ ମାନଙ୍କ ପାଖରୁ, ଶିକ୍ଷକ, ବୁଦ୍ଧିଜୀବି ମାନଙ୍କଠାରୁ ମତେ ଖୁବ୍ ଆଦର ମିଳେ । ମୋର ଯୁକ୍ତଦୁଇ ପ୍ରଥମ ବର୍ଷର ଫିଜିକ୍ସ କ୍ଲାସ୍‌ରେ ପ୍ରଫେସର ସଲିଳ ଚକ୍ରବର୍ତ୍ତୀ ପଢ଼ାଉଥାନ୍ତି । ତାଙ୍କ କ୍ଲାସ୍‌ର ନୋଟ୍ ଲେଖିବା ଜାଗାରେ ମୁଁ ମୁହଁ ପୋତି ଲେଖି ଚ୍ଛଲିଥାଏ ଏକ ପ୍ରତିଯୋଗିତାରେ ଭାଗ ନେବା ପାଇଁ ଗୋଟିଏ କବିତା । ଆସି ପାଖରେ ଠିଆ ହେଲେ । ଛିଡ଼ା କରି ପଚ୍ଚରିଲେ ନାଁ କ'ଣ ମୋର । ପୁଣି ପଚ୍ଚରିଲେ ବାପା ନାଁ କଣ ? ମୁଁ କହିଲି ବୈକୁଣ୍ଠ ବିଶ୍ୱାଳ । ସ୍ତବ୍ଧ ହୋଇ କହିଲେ, "ତୋ ବାପାକୁ ମୁଁ ପାଠ ପଢ଼େଇଛି । ତା' ଭଳି ଛାତ୍ର ଆଉ କାହାକୁ ଦେଖିନାହିଁ । ତୋ' ବାପା ତ ଭାଷଣ ଦେଲାବେଳେ କବିତା କମ୍ପୋଜ୍ କରିଦେଉଥିଲା" ।

ତା' ପରବର୍ଷ ମୁଁ ବି.ଜେ.ବି. କଲେଜର ସାଧାରଣ ସମ୍ପାଦକ ନିର୍ବାଚନ ଲଢ଼ି **What I stand for** ମିଟିଂରେ ଭାଷଣ ଦେଇ ସାରିବା ପରେ, ସେ ଓ ବାପାଙ୍କର ଆଉଜଣେ

ଶିକ୍ଷକ ଡଃ ସୁରେନ୍ଦ୍ର ନାଥ ନାୟକ "ପଚିଶ ବର୍ଷ ତଳର ତା' ବାପାର ଭାଷଣ ପରି ଶୁଭିଲା" ବୋଲି କହିଥିବା କଥା ଶପଥ ଗ୍ରହଣ ଉତ୍ସବ ଦିନ ପ୍ରିନ୍‌ସିପାଲ୍ ପ୍ରକାଶ କରିଥିଲେ ।

ଅଥଚ ମୁଁ ଦଶମଶ୍ରେଣୀ ପର୍ଯ୍ୟନ୍ତ ବକ୍ତୃତାରେ ଭାଗ ନେଉ ନଥିବାରୁ ବାପା ଦୁଃଖିତ ହେଉଥିଲେ । "ପ୍ରବନ୍ଧରେ ପୁରସ୍କାର ପାଉଛୁ, ବକ୍ତୃତା କାହିଁକି କରି ପାରୁନୁ" ବୋଲି କେତେଥର କହନ୍ତି । ଥରେ ମୁଁ ମନ ନିଶ୍ଚିତ କରି ଦଶମ ଶ୍ରେଣୀରେ ସ୍କୁଲ୍‌ର ସିନିୟର୍ ବିଭାଗ ଓଡ଼ିଆ ଡିବେଟ୍‌ରେ ଭାଗନେଇ ପ୍ରଥମ ହେବାପରେ କହିଲେ, "ବାସ୍, ଏଥର ତୁ ଆଉ ପଛକୁ ରହିଁବୁ ନାହିଁ" । ଯୁକ୍ତ ଦୁଇ ପଢୁଥିବାବେଳେ ମୋର କପ୍, ସିଲ୍ଡ ଗୁଡ଼ିକ ଚୋରି ହୋଇଯିବାରୁ ମୁଁ ମନଦୁଃଖ କରିବାର ଦେଖି କହିଲେ, "ଗୋଟେ ବିଲ୍ ପାଇଲେ (ସେତେବେଳେ 'ନବ ପ୍ରଭାତ' ଛପା ହେବା ସମ୍ପୂର୍ଣ୍ଣ ବନ୍ଦ ହୋଇନଥାଏ), ତୋ'ର କପ୍‌ଗୁଡ଼ିକୁ କିଣିଦେବି" । ୧୯୯୮ ଚାନ୍‌ସେଲର୍ ଡିବେଟ୍‌ର ଫାଇନାଲ୍‌ରେ ମୁଁ ପୁରସ୍କାର ନ ପାଇବା କଥା ତାଙ୍କୁ ବହୁତ ଆଘାତ ଦେଇଥିଲା । ମାତ୍ର ତାଙ୍କ ସମୟର ଚାନ୍‌ସେଲର୍ ଡିବେଟ୍ ଆଉ ମୋ' ସମୟ ମଧ୍ୟରେ ବହୁତ ତଫାତ୍ । ମୋ' ବେଳକୁ ବିଶ୍ୱବିଦ୍ୟାଳୟର ଅଡିଟୋରିୟମ୍ ବାହାରେ କେହି ଜାଣିପାରୁ ନଥିଲେ ଏ ଡିବେଟ୍ ହେଉଥିବା କଥା । ତା'ର କିଛିଦିନ ପୂର୍ବରୁ ମୁଁ କଟକରେ ରାଜ୍ୟସ୍ତରୀୟ ଯୁବୋତ୍ସବ "ଡ୍ରିମ୍ ଫେଷ୍ଟ"ର ଓଡ଼ିଆ ଡିବେଟ୍‌ରେ ପ୍ରଥମ ହୋଇ 'ରାତାରାତି ଷ୍ଟାର' ପାଲଟି ସିଲ୍ଡ ନେଇ ଘରକୁ ଫେରିଥାଏ । ଯେଉଁ ବକ୍ତୃତାରେ ମୁଁ କାଳେ ଶ୍ରୋତାମାନଙ୍କୁ "ସ୍ତମ୍ଭୀଭୂତ" କରି ଦେଇଥାଏ, ତାର ଉପାଦାନ ଓ ଭାଷା ଶୈଳୀ ମୁଁ ପାଇଥିଲି ଅନେକ ଥର ବାପାଙ୍କ ସହ କରିଥିବା ଆଲୋଚନାରୁ ।

ଦିନେ ରାତିରେ ହଠାତ୍ ନିଦ ଭାଙ୍ଗିଗଲାରୁ ଦେଖିଲି, ବାପା ସେ ସିଲ୍ଡକୁ ଧୀରେ କରି ଆଲମାରୀରୁ କାଢ଼ି ଆଦର ସହକାରେ ଦେଖୁଛନ୍ତି । ମୁଁ ଉଠି ପଡ଼ିବାରୁ ଆଲମାରୀରେ ଆଉକ'ଣ ବହିପତ୍ର ଖୋଜୁଥିବାର ଅଭିନୟ କଲେ । ତା' ପରବର୍ଷ ୧୯୯୯ର ରାଜ୍ୟପାଳ କପ୍ ଡିବେଟ୍‌ରେ ପ୍ରଥମ ହୋଇ ମୁଁ ପାଇଥିବା ଏକ ବିଶାଳକାୟ କପ୍‌କୁ ଦାଣ୍ଡଘରେ ରଖିଦେଇ ଗଲି ତାଙ୍କ ଫଟୋ ସାମ୍ନାରେ । କାଳେ ରାତିରେ ଲୁଚିକରି ଆସି ଦେଖିବେ ! ତା' ପରଠାରୁ ମୁଁ ଆଉ ଡିବେଟ୍‌ରେ ଭାଗ ନେଇନାହିଁ ।

ବାପାଙ୍କ ସହ ନାନା ବିଷୟରେ ଆଲୋଚନା ଓ ବିତର୍କ କରିବା ମୋର ଅଭ୍ୟାସରେ ପରିଣତ ହୋଇଥିଲା । ମାତ୍ର ସେ କେବେହେଲେ ମୋର ମତ ବା ବକ୍ତବ୍ୟକୁ କାଟି ଦିଅନ୍ତି ନାହିଁ । ମତ ଅମେଳ ହେଲେ କହନ୍ତି, 'ତୁ ବଡ଼ହେଲେ, ଆଉଟିକେ ପଢ଼ା ପଢ଼ି କଲେ ଜାଣିବୁ' । ଆଉ ନିଜସ୍ୱ ମତକୁ ଲଦିବାର ଆଦୌ ଚେଷ୍ଟା କରନ୍ତି ନାହିଁ । ନିଜ ପିଲାମାନଙ୍କ ସହ ବାପାମାନେ ଏପରି ଗଣତାନ୍ତ୍ରିକ ହେବାଟା ବିରଳ ନହେଲେବି ସାଧାରଣ କଥା ନୁହେଁ । ମୁଁ ଯୁକ୍ତଦୁଇ ବେଳେ ସାଧାରଣ ସମ୍ପାଦକ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ସ୍ଥିର କରିବାରେ ମତେ ସେ ବୁଝାଇଲେ ଯେ ଏ ନିର୍ବାଚନରେ ଲଢ଼ିବା ନିରର୍ଥକ । 'ତମେ ତ ପୁଣି କଲେଜରେ ନିର୍ବାଚନ ଲଢୁଥିଲ' ବୋଲି ମୁଁ ଜବାବ୍ ଦେବାରେ କହିଲେ, "ଆମବେଳେ କଲେଜ ନିର୍ବାଚନ

ବ୍ୟକ୍ତି (Individual)ର ଲଢ଼େଇ ନଥିଲା, ଥିଲା ବିଚ୍ଚରଧାରା ଓ ରାଜନୈତିକ ସଂଘର୍ଷର ଲଢ଼େଇ । ଏବର ଏ ବ୍ୟକ୍ତିକୈନ୍ଦ୍ରିକ କଲେଜ ନିର୍ବାଚନରେ ଛିଡ଼ାହେବାର ମୂଲ୍ୟ କଣ ?" ଅଥଚ ମୁଁ ଜିଦ୍ ଧରିବାରୁ, ସେ ମତେ ବାଧା ଦେଇ ନଥିଲେ ।

୧୯୯୯ରେ ଦିଲ୍ଲୀ ସ୍କୁଲ୍ ଅଫ୍ ଇକନମିକ୍ସରେ ପହଞ୍ଚିଲାପରେ ମତେ ସେ ଯାଗା ଅତି ପରିଚିତ ପରି ମନେ ହେଲା । ରତନ ଟାଟା ଲଇବ୍ରେରୀ, ଜେ.ପି. ଟିଷ୍କଲ୍, ଜୁବୁଲି ହଲ୍ – ଏସବୁଠି ମୁଁ ମନେ ମନେ ବାପାଙ୍କୁ ଖୋଜି ବୁଲିଛି । ଭାବି ଆଚମ୍ଭିତ ହୋଇଛି ଯେ କୌଣସି ଆର୍ଥିକ ସମ୍ବଳ ନଥାଇ, ଆଜିକୁ ୨୮ ବର୍ଷ ପୂର୍ବେ ମୋରି ବୟସର ଜଣେ ଯୁବକ କିପରି ଏଠି ଆସି ପାଠପଢ଼ିବାକୁ ସାହସ କରିପାରିଲା ।

ହବିବ୍ ତନବୀରଙ୍କ "ଚରଣ ଦାସ୍ ଚୋର୍" ଦେଖିବାପରେ ତାଙ୍କୁ ସାକ୍ଷାତ କରି କହିଲି ଯେ ଆପଣଙ୍କ ଏହି ନାଟକ ଜରୁରୀ ପରିସ୍ଥିତି ସମୟରେ ପ୍ରଥମଥର ଲାଗି ମଞ୍ଚସ୍ଥ ହେବାବେଳେ ମୋର ବାପା ତା'ର ଏକ ବିଶଦ୍ ବିଶ୍ଳେଷଣ ଆପଣଙ୍କ ସାକ୍ଷାତ୍କାର ସହ କୌଣସି ଏକ ସମ୍ବାଦପତ୍ରରେ ପ୍ରକାଶ କରିଥିଲେ । ହବିନ୍ ତନ୍‌ବୀର ମୋର ଖାତାରେ ଅଟୋଗ୍ରାଫ୍ ଦେଇ, ମୋ ମୁଣ୍ଡରେ ହାତ ମାରି କହିଲେ, "ମେରେ ୟାଦାସ୍ ମେଁ ନହୀ ହୈ, ପର୍ ଆପ୍‌କେ ପିତାଜୀ ଜରୁର୍ ଏକ୍ କ୍ରାନ୍ତିକାରୀ ପତ୍ରକାର ହୋଙ୍ଗେ । ମେରେ ନାଟକ୍ କୋ ଦେଖ୍‌ନା ତୋ ଏକ୍ ହିମ୍ମତ୍ କି ବାତ୍ ଥୀ । ଉସ୍‌କେ ବାରେ ମେଁ ଲିଖ୍‌ନା ଔର ମେରେ ସାକ୍ଷାତ୍କାର କେ ସାଥ୍, ୟହ କୋଇ କ୍ରାନ୍ତିକାରୀ ସାଥୀ ନେ ହିଁ କିୟା ହୋଗା ।"

ବାପାଙ୍କ ସହ ମୋର ସମ୍ପର୍କ ଜଣେ ପୁତ୍ରର ତା' ଜନ୍ମଦାତା ପିତାଙ୍କ ସହ ସମ୍ପର୍କ ପରି ନିତାନ୍ତ ଆବେଗିକ । ସେ ବିଷୟରେ ଲେଖିବାକୁ ମୋର ଧୈର୍ଯ୍ୟ ନାହିଁ ।



# ପ୍ରତୀକ୍ଷା

**ତା**'ରି ପ୍ରତୀକ୍ଷା ଥିଲା
ଶୂନ୍ୟତାର ନିବୁଜ ଅନ୍ଧାରେ
ଅୟୁତ ଯୋଜନ ଦୂରୁ
ଚାହିଁ ବସିଥିଲୁ
ସ୍ୱପ୍ନ ଏବଂ ଆଶଙ୍କାର ଶହ ଶହ ଉଜାଗର ରାତି
ଏଇ ହେବ ପ୍ରଥମ ପାଆନ୍ତି ।

ଏପଟେ ସାମାନ୍ୟ ତନ୍ଦ୍ରା
ସେପଟରେ ଚରମ ଯନ୍ତ୍ରଣା
ଚାହିଁ ବସିଥିଲୁ
ପ୍ରଥମରୁ ଅନ୍ତିମ ପ୍ରହର
ସେ ଆସିବ ଶବ୍ଦବାନ ପକ୍ଷୀରାଜ ଚଢ଼ି
ହାତରେ ତା' ସମ୍ଭାବନା ସକାଳ ଦିହୁଡ଼ି ।

ଆକାଶର ମୁଷ୍ଟିମେୟ ତାରା
ଲୟ ଲଭୁ ଥିଲେ
ଆକାଶର ମହାସମୁଦ୍ରରେ
ପୂର୍ଣ୍ଣିମାର ସୂର୍ଯ୍ୟ ଉଠିବାକୁ
ବାକିଥିଲା ଅଳ୍ପକେଇ ଦଣ୍ଡ
ଲିତା ଓ ବିଲିତା ।
ପରମ ପବିତ୍ର ସେହି ବାହ୍ମ ମୁହୂର୍ତ୍ତରେ
ଅସୀମ-ବେଦନା ଗ୍ରସ୍ତ କରୁଣ ଚିତ୍କାର
... କିଛି ରକ୍ତସ୍ରାବ;
ପ୍ରତୀକ୍ଷାର ଅନ୍ତ
କାଲିର ସେ ଅନାଗତ
ଅରୂପ ଅବ୍ୟକ୍ତ
ଆଜି ଉପଗତ ।

**ଆ**ଉ ଏକ ସନ୍ତାନର ସୁଦୂର ପ୍ରତୀକ୍ଷା
ବହୁ ଦିନୁ ଅନେକ ବର୍ଷରୁ
କୋଟି କୋଟି କୁଡ଼ିଆର ଭଙ୍ଗାଚାଳ ତଳେ
ସାଙ୍ଗସାଥୀ ପରିଜନ ମେଳେ
ଆମେ ଉଜାଗର
ସହରର ଜନଗହଳିରେ
ବନ୍ଦର, ଅଫିସ, କଳ-କାରଖାନା ଲୁହାଗେଟ୍ ଭେଦି

ଧାନ ହିଡ଼ ଖଣି ଅନ୍ଧକୂପ
ସବୁଠାରେ ଗୋଟିଏ ପ୍ରତୀକ୍ଷା
ଗୋଟିଏ ମନ୍ତ୍ର .... ଗୋଟିଏ ହିଁ ଦୀକ୍ଷା ।

ବିଶାଳ ତା' ଅବକ୍ଷୟ ନେଇ
ସନ୍ତାନ ସେ ଜନ୍ମ ନେବ
ନିଶ୍ଚେ ଜନ୍ମ ନେବ,
ଆଜି, କାଲି କିମ୍ବା ଆଉ ଦଶ ବର୍ଷ ପରେ
ତା' ପାଇଁ ବି ଲୋଡ଼ା କିଛି ଚିତ୍କାର... ଯନ୍ତ୍ରଣା
... କିଛି ରକ୍ତସ୍ରାବ ।

ଲକ୍ଷ ଲକ୍ଷ ପଦାତିକ ସହ –
ଭଗବତୀ, ଗୋପବନ୍ଧୁ ସଭିଙ୍କ ସମାଧି
ସେଇ ପ୍ରତୀକ୍ଷାରେ ଗଢ଼ା,
ସେଇ ପାଦଚିହ୍ନ
ସେଇ ଉଚ୍ଚାରଣ
ଏ ଜାତିର ନୈବେଦ୍ୟ - ଅବଢ଼ା ।

ହଜାର ହଜାର ବର୍ଷ ଅସୀମ ମୁହୂର୍ତ୍ତ
ଅନ୍ଧାରୁଆ ପଥର ଦେଉଳ
ନିଶୂନ ଜଙ୍ଗଲ
ରହି ରହି ପିଶାଚୀର ରଡ଼ି
ତଥାପି ବି ଅବ୍ୟାହତ
ଏ ରୁକୁଣା ରଥ
ଆମର ପ୍ରତୀକ୍ଷା :
ଆଜିଠାରୁ କୋଟିଗୁଣେ ମହୀୟାନ୍
ଆହୁରି ବିଶାଳ
ଆଉ ଏକ ସଫେଦ୍ ସକାଳ
ତା' ପାଇଁ ସଜାଡ଼ିବି ମଙ୍ଗଳ କଳସ
ପତ୍ନୀ ମୋର ହୁଳହୁଳି ଦେବ
ସାଙ୍ଗସାଥୀ ପରିଜନ କରତାଳି-ଧ୍ୱନି
ଗଗନ ପବନ ଭେଦି ସେଦିନ ଉଠିବ
ସେପାଇଁ ମୁଁ ସେଦିନ ଲେଖିବି କବିତା
ରାଗ, ଛନ୍ଦ, ଯମକର ପରିପୂର୍ଣ୍ଣ ଯୋଗ
ସବୁରି ସଂହତି...

ଇଏ ତାର ଉଦ୍‌ଯୋଗ ପର୍ବ
କେବଳ ପ୍ରସ୍ତୁତି ।

୨୬/୧୦/୭୬, ଭୁବନେଶ୍ୱର

(ଝିଅ ଚେତନାର ଜନ୍ମବେଳକୁ ଲେଖିଥିବା କବିତା)

# ମୃତ୍ୟୁଦଣ୍ଡ : ମଧ୍ୟଯୁଗୀୟ ବର୍ବରତା

ପାକିସ୍ତାନର ପୂର୍ବତନ ପ୍ରଧାନମନ୍ତ୍ରୀ ଜୁଲ୍‌ଫିକର୍ ଅଲ୍ଲୀ ଭୁଟ୍ଟୋଙ୍କୁ ଅବଶେଷରେ ସାମରିକ ଶାସନର ଫାଶୀକାଠରେ ପ୍ରାଣ ବିସର୍ଜନ କରିବାକୁ ପଡ଼ିଲା । ତାଙ୍କୁ ମୃତ୍ୟୁଦଣ୍ଡରୁ ବଞ୍ଚାଇବାକୁ ମୁଖ୍ୟ ସାମରିକ ପ୍ରଶାସକ ଜିଆ-ଉଲ୍-ହକ୍‌ଙ୍କୁ ପୃଥିବୀର ବିଭିନ୍ନ ଦେଶ ପକ୍ଷରୁ ଯେଉଁ ନିବେଦନ କରାଯାଇଥିଲା, ତାହା ସମ୍ପୂର୍ଣ୍ଣ ବିଫଳ ହେଲା । ଆଇନ୍ ଓ ନ୍ୟାୟାଳୟ ପ୍ରତି ତଥାକଥିତ ସମ୍ମାନ ପ୍ରଦର୍ଶନ ନାଁରେ ଜେନେରାଲ୍ ଜିଆ ବିଶ୍ୱ ଜନମତ ପ୍ରତି ଯେଉଁଭଳି ଅକୁଣ୍ଠିତ ଅସମ୍ମାନ ପ୍ରଦର୍ଶନ କଲେ, ପୃଥିବୀ ଇତିହାସରେ ତାର ସମାନ୍ତରାଳ ଉଦାହରଣ କ୍ୱଚିତ୍ ଦେଖିବାକୁ ମିଳେ ।

ଆଧୁନିକ ଫାଶିଷ୍ଟବାଦର ଅନ୍ୟତମ ପ୍ରବର୍ତ୍ତକ ହିଟଲର ଭଳି ଏକଛତ୍ର ଶାସକ ମଧ୍ୟ ଏକଦା ବିଶ୍ୱ ଜନମତର ଚ୍ଚପାରେ କମ୍ୟୁନିଷ୍ଟ ଇଣ୍ଟରନାସ୍‌ନାଲ୍‌ର ତତ୍‌କାଳୀନ ନେତା ଜର୍ଜ ଦିମିତ୍ରୋଭଙ୍କୁ ନାଜି ଜେଲ୍‌ରୁ ମୁକୁଳାଇ ଥିଲା । ଏଇ କେଇବର୍ଷ ତଳେ ବଲିଭିଆର ଘୃଣ୍ୟ ସାମରିକ ଶାସକ ବିଭିନ୍ନ ରାଷ୍ଟ୍ରମୁଖ୍ୟଙ୍କ ଅନୁରୋଧ ରକ୍ଷାକରି ତରୁଣ ଦାର୍ଶନିକ ରେଜିସ୍ ଦିବ୍ରେଙ୍କୁ ଆଜୀବନ କାରାଦଣ୍ଡରୁ ମୁକ୍ତି ଦେଇଥିଲା । ଏଣୁ ସ୍ପଷ୍ଟତଃ ଜେନେରାଲ ଜିଆ-ଉଲ୍-ହକ୍‌ଙ୍କ ନିର୍ମମତା ସମସ୍ତ ପ୍ରକାର ନିନ୍ଦାବାଦର ସୀମା ମଧ୍ୟ ଅତିକ୍ରମ କରିଗଲା ।

ଫାଶୀଦଣ୍ଡ କାର୍ଯ୍ୟକାରୀ ହେବା ପରେ ସମଗ୍ର ପାକିସ୍ତାନର ଜନସାଧାରଣ ସାମରିକ ଆଇନ୍‌କୁ ଭ୍ରୂକ୍ଷେପ ନକରି ଦେଶବ୍ୟାପି ଯେଉଁ ତୁମୁଳ ବିକ୍ଷୋଭ ପ୍ରଦର୍ଶନ ଆରମ୍ଭ କରିଛନ୍ତି, ତାହା ଭୁଟ୍ଟୋଙ୍କ ଲୋକପ୍ରିୟତାର ସର୍ବଶ୍ରେଷ୍ଠ ପ୍ରମାଣ । ପାକିସ୍ତାନ ବାହାରେ ସାରା ପୃଥିବୀରେ ଜନସାଧାରଣ ଏହି ବର୍ବର କାଣ୍ଡକୁ ସର୍ତ୍ତହୀନଭାବେ ନିନ୍ଦା କରି ସାମରିକ ପ୍ରଶାସନ ବିରୁଦ୍ଧରେ ଆର୍ନ୍ତଜାତିକ ଜନସଂହତିର ପ୍ରମାଣପତ୍ର ପ୍ରସ୍ତୁତ କରିଛନ୍ତି ।

ଭୁଟ୍ଟୋଙ୍କ ବିରୁଦ୍ଧରେ ପାକିସ୍ତାନ ନ୍ୟାୟାଳୟରେ ଯେଉଁସବୁ ଅଭିଯୋଗ ଉପସ୍ଥାପିତ କରାଯାଇଥିଲା, ସେଗୁଡ଼ିକର ସତ୍ୟାସତ୍ୟ ସମ୍ପର୍କରେ କୌଣସି ମନ୍ତବ୍ୟ ଦିଆଯାଇ ନପାରେ । କାରଣ, ସାମରିକ ଏକଛତ୍ର ଶାସନର ଇତିହାସରେ, ତାହା ଯେ କୌଣସି ଦେଶରେ ହେଉନା କାହିଁକି, କେବେ ନ୍ୟାୟାଳୟରେ ମୁକ୍ତ ଏବଂ ନିରପେକ୍ଷ ବିଚ୍ଚର ସମ୍ଭବ ହୋଇନାହିଁ । ଏପରିକି ପାକିସ୍ତାନ ସୁପ୍ରିମ୍ କୋର୍ଟରେ ଭୁଟ୍ଟୋଙ୍କ ଅପିଲ ବିଚ୍ଚର କ୍ଷେତ୍ରରେ ମଧ୍ୟ ସେଇ ଧରଣର ସନ୍ଦେହ ପ୍ରକାଶ କରାଯିବାର ଯଥେଷ୍ଟ କାରଣ ରହିଛି । ସୁପ୍ରିମ୍ କୋର୍ଟରେ ରାୟ ଘୋଷଣାରେ ତିନିଜଣ ବିଚ୍ଚରପତି ଭୁଟ୍ଟୋଙ୍କ ମୃତ୍ୟୁଦଣ୍ଡାଦେଶ ବିରୁଦ୍ଧରେ ସ୍ପଷ୍ଟ ମତବ୍ୟକ୍ତ କରିଥିଲେ । ମାତ୍ର ପରେ ଯେତେବେଳେ ସେହି ରାୟର ପୁନର୍ବିଚ୍ଚର ସେହି ସୁପ୍ରିମ୍‌କୋର୍ଟରେ କରାଗଲା, ଉକ୍ତ ତିନିଜଣ ନ୍ୟାୟାଧୀଶ କୌଣସି ମତ ନ ଦେଇ ସମ୍ପୂର୍ଣ୍ଣ ନୀରବ ରହିଲେ । ସେ ଯାହାହେଉ, ଯଦି ବି ଭୁଟ୍ଟୋ କ୍ଷମତାରେ ଥିବାବେଳେ ତାଙ୍କର

କୌଣସି ରାଜନୈତିକ ପ୍ରତିଦ୍ୱନ୍ଦୀଙ୍କୁ ହତ୍ୟା କରିବାର ଚକ୍ରାନ୍ତ କରି ନଥାନ୍ତେ, ତଥାପି ତାଙ୍କୁ ଅନ୍ୟ କୌଣସି 'ଅପରାଧ'ରେ ଅଭିଯୁକ୍ତ କରାଇ ସାମରିକ କର୍ତ୍ତୃପକ୍ଷ ସେହି ସୁପ୍ରିମ୍ କୋର୍ଟ ଦ୍ୱାରା ହିଁ ମୃତ୍ୟୁଦଣ୍ଡାଦେଶ ଘୋଷଣା କରିଥାନ୍ତେ । ଏହି ମାସ ୬ ତାରିଖ ଦିନ ଲଣ୍ଡନ୍‌ଠାରେ ପୃଥିବୀର ବିଭିନ୍ନ ଦେଶର ସୁପ୍ରତିଷ୍ଠିତ ଆଇନଜୀବୀ ଓ ଆଇନ୍‌ବିତ୍‌ମାନେ ଏକ ଦୁଇଦିନିଆ ସମ୍ମିଳନୀ ଓ ଆଲୋଚନା ଚକ୍ର ସମ୍ପନ୍ନ କରି ସର୍ବସମ୍ମତିକ୍ରମେ ମତ ଘୋଷଣା କରିଛନ୍ତି ଯେ "ଭୁଟ୍ଟୋଙ୍କ ମୋକଦ୍ଦମା ଶୁଣାଣି ବେଳେ ମୌଳିକ ନ୍ୟାୟର ପ୍ରୟୋଗ କରାଯାଇ ନାହିଁ ।" ଉକ୍ତ ନ୍ୟାୟବିତ୍‌ମାନେ ସାତଟି ସୁସ୍ପଷ୍ଟ କାରଣ ଓ ପ୍ରମାଣ ଦର୍ଶାଇ ମନ୍ତବ୍ୟ ଦେଇଛନ୍ତି ଯେ ପାକିସ୍ତାନ ସୁପ୍ରିମ୍ କୋର୍ଟ "ନ୍ୟାୟ ଓ ଇସ୍‌ଲାମୀୟ ଆଇନ୍‌ର ସର୍ବନିମ୍ନ ମାନଦଣ୍ଡକୁ ଉପେକ୍ଷା କରିଛନ୍ତି" ।

ମୋଟାମୋଟିଭାବେ ପୃଥିବୀରେ ସର୍ବତ୍ର ମତପ୍ରକାଶ ପାଇଛି ଯେ ସାମରିକ କର୍ତ୍ତୃପକ୍ଷ ତାଙ୍କର ଶକ୍ତିଶାଳୀ ଶତ୍ରୁ ଭୁଟ୍ଟୋଙ୍କୁ ନ୍ୟାୟାଳୟ ମାଧ୍ୟମରେ ହତ୍ୟା କରିଛନ୍ତି ।

ଭୁଟ୍ଟୋ ଯେ ନିଷ୍କଳଙ୍କ, ସାଧୁ ଓ ସଚ୍ଚୋଟ ରାଜନୀତିଜ୍ଞ ବା ଶାସକ ଥିଲେ, ତାହା କେହି ଦାବୀ କରୁନାହାନ୍ତି । ସେ ପାକିସ୍ତାନର ରାଜନୀତିରେ ମହାତ୍ମା ବା ପୟଗମ୍ବର ନଥିଲେ । ନବ୍ୟ ସ୍ୱାଧୀନ ଦେଶମାନଙ୍କର ପୁଞ୍ଜିବାଦୀ ପଥାନୁସରଣକାରୀ ରାଜନୀତିଜ୍ଞମାନେ ଯେଉଁ ପ୍ରକାର ରାଜନୈତିକ ପେଞ୍ଚପାଞ୍ଚର ଆଶ୍ରୟ ନେଇଥାନ୍ତି, ଭୁଟ୍ଟୋ ସେଥିରୁ ନିଜକୁ ମୁକ୍ତ ରଖି ନଥିଲେ । ମାତ୍ର ପାକିସ୍ତାନ ରାଜନୀତିର କଳା ଇତିହାସରେ ସେ ହିଁ ଥିଲେ ଏକମାତ୍ର ରାଷ୍ଟ୍ରନୀତିଜ୍ଞ ଯେ କି ଦେଶ ଓ ଦେଶବାସୀଙ୍କୁ ଏକ ନିର୍ଦ୍ଦିଷ୍ଟ ସ୍ତର ପର୍ଯ୍ୟନ୍ତ ସାମ୍ବିଧାନିକ ଓ ଗଣତାନ୍ତ୍ରିକ ଅଧିକାର ପ୍ରଦାନ କରିଥିଲେ । ପୁନଶ୍ଚ ୧୯୭୧ ମସିହାରେ ପାକିସ୍ତାନର ତତ୍‌କାଳୀନ ଅଂଶ 'ପୂର୍ବବଙ୍ଗ' ବିଚ୍ଛିନ୍ନ ହେବା ଫଳରେ ଓ ଭାରତ-ପାକିସ୍ତାନ ଯୁଦ୍ଧରେ ପାକିସ୍ତାନର ପରାଜୟ ଓ ପ୍ରଭୂତ ଆର୍ଥିକ କ୍ଷତି ହେବା ଫଳରେ ଦେଶ ମଧ୍ୟରେ ଓ ଆର୍ନ୍ତଜାତିକ ମଞ୍ଚରେ ପାକିସ୍ତାନ ଓ ପାକିସ୍ତାନବାସୀଙ୍କ ଭାଙ୍ଗିପଡ଼ିଥିବା ମନୋବଳକୁ ଭୁଟ୍ଟୋ ହିଁ ମଜବୁତକରି ଜାତୀୟ ମର୍ଯ୍ୟାଦା ପ୍ରତିଷ୍ଠା କରିବାରେ ସଫଳ ହୋଇଥିଲେ । ପାକିସ୍ତାନର ବିଧ୍ୱସ୍ତ ଅର୍ଥନୀତିର ନବୀକରଣ ପାଇଁ ସେ ପ୍ରାୟ ଅଧିକାଂଶ ବୃହତ୍ ଶିଳ୍ପ ଓ ବାଣିଜ୍ୟ ସଂସ୍ଥାକୁ ଜାତୀୟକରଣ କରିବାର ଯେଉଁ ଦୃଢ଼ ପଦକ୍ଷେପ ନେଇ ସଫଳ ହୋଇଥିଲେ, ତାହାର ଉଦାହରଣ ପାକିସ୍ତାନର ସମାନ୍ତରାଳ ଦେଶମାନଙ୍କରେ ପ୍ରାୟ ଦେଖିବାକୁ ମିଳେନା ।

ଏହା ହିଁ ଥିଲା ବାସ୍ତବରେ ଭୁଟ୍ଟୋଙ୍କର ମୁଖ୍ୟ ଅପରାଧ । ପାକିସ୍ତାନକୁ ତୃତୀୟ ବିଶ୍ୱର ଏକ ସ୍ୱାଧୀନ, ସାର୍ବଭୌମ ରାଷ୍ଟ୍ର ରୂପେ ଗଢ଼ି ତୋଳିବାରେ ତାଙ୍କର ପ୍ରଚେଷ୍ଟା ସ୍ୱାଭାବିକ ଭାବେ ପୃଥିବୀର ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ପାଇଁ – ବିଶେଷତଃ ଆମେରିକା ସାମ୍ରାଜ୍ୟବାଦର ସ୍ୱାର୍ଥ ପାଇଁ – କେବେ ହିତକର ନଥିଲା । ଏଣୁ ସେ ଆମେରିକା ସାମ୍ରାଜ୍ୟବାଦର ପ୍ରହରୀ, କୁଖ୍ୟାତ ସି.ଆଇ.ଏ. ଦ୍ୱାରା ପରିଚାଳିତ ସାମରିକ ବିଦ୍ରୋହରେ

କ୍ଷମତାଚ୍ୟୁତ ହେଲେ ଓ ପାକିସ୍ତାନ ପୁଣି ଏକଛତ୍ରବାଦର ଅନ୍ଧାରରେ ବୁଡିବାକୁ ଲାଗିଲା । ତୃତୀୟ ବିଶ୍ୱର ଇତିହାସ ଗର୍ବର ସହ ସ୍ମରଣ କରିବ ଯେ ଭୁଟ୍ଟୋ ବିକାଶଶୀଳ ଓ ଅବିକଶିତ ଦେଶମାନଙ୍କର ନେତୃବର୍ଗଙ୍କ ମଧ୍ୟରେ ଏକ କ୍ୱଚିତ୍ ବ୍ୟକ୍ତିତ୍ୱ ଯେ କି ଦୁଇ ଅତିବୃହତ୍ ଶକ୍ତି, ଆମେରିକା ସାମ୍ରାଜ୍ୟବାଦ ଓ ରୁଷ୍ ସାମାଜିକ-ସାମ୍ରାଜ୍ୟବାଦର ଆଧିପତ୍ୟକୁ ସ୍ୱୀକାର କରି ନାହାନ୍ତି । ଏହାହିଁ ହେଲା ବାସ୍ତବରେ ତାଙ୍କର ସର୍ବୋଚ୍ଚ ଅପରାଧ ଯେଉଁଥିପାଇଁ ପାକିସ୍ତାନର ତଥାକଥିତ ଇସ୍‌ଲାମିକ୍ ଆଇନ୍ ଓ ନ୍ୟାୟାଳୟର ଦ୍ୱାହି ଦେଇ ଲୋକଲୋଚନର ଅନ୍ତରାଳରେ ସାମରିକ ମାଜିଷ୍ଟ୍ରେଟ୍‌ଙ୍କ 'ବୈଧାନିକ' ଉପସ୍ଥିତିରେ ତାଙ୍କୁ ନିର୍ମମ ଭାବେ ହତ୍ୟା କରାଗଲା ।

ଏହି ମୃତ୍ୟୁଦଣ୍ଡ ପାଇଁ ଗୋଟିଏ ଦୃଷ୍ଟିରୁ ଭୁଟ୍ଟୋ ମଧ୍ୟ ନିଜେ କେତେକାଂଶରେ ଦାୟୀ । ତାହା ହେଉଛି ସାମରିକ ଶକ୍ତି ଉପରେ ତାଙ୍କର ଅତିରିକ୍ତ ନିର୍ଭରଶୀଳତା । କେବଳ ପାକିସ୍ତାନ ନୁହେଁ, ତୃତୀୟ ବିଶ୍ୱର ଅଧିକାଂଶ ରାଷ୍ଟ୍ରର ଶାସକମାନେ ଦିନକୁ ଦିନ ସାମରିକ ଶକ୍ତି ଉପରେ ବେଶୀ ବେଶୀ ନିର୍ଭରଶୀଳ ହେଉଥିବାର ଲକ୍ଷ୍ୟ କରାଯାଉଛି । ପାକିସ୍ତାନ ସେନାବାହିନୀରେ ଜିଆ-ଉଲ୍-ହକ୍‌ଙ୍କ ସ୍ଥାନ ସପ୍ତମରେ ଥିଲା । ମାତ୍ର ଭୁଟ୍ଟୋ ନିଜ ଶାସନ କାଳରେ ତାଙ୍କୁ ବିଶ୍ୱସ୍ତ ବୋଲି ବିଚାର କରି ସେନାବାହିନୀର ମୁଖ୍ୟ ପଦବୀ ପ୍ରଦାନ କରିଥିଲେ । ହୁଏତ ତାଙ୍କର ବିଶ୍ୱାସ ଥିଲା ଯେ ପାକିସ୍ତାନର ନବନିର୍ମାଣରେ ସେନାବାହିନୀ ତାଙ୍କ ସରକାରର ସହାୟତା କରିବ ।

ପ୍ରସଙ୍ଗକ୍ରମେ ଉଲ୍ଲେଖଯୋଗ୍ୟ ଯେ ସେନା ଉପରେ ଏହି ଧରଣର ଅବାଂଛିତ ନିର୍ଭରଶୀଳତାର ପ୍ରବୃତ୍ତି ଆମ ଭାରତରେ ଶାସକବର୍ଗଙ୍କ ନିକଟରେ ମଧ୍ୟ ବଢ଼ିଚାଲିଛି । ଅର୍ଥନୈତିକ ଓ ରାଜନୈତିକ ବିପର୍ଯ୍ୟୟର ଫଳସ୍ୱରୂପ ଦେଶରେ ଯେ କାଁ ଭାଁ ଗଣତାନ୍ତ୍ରିକ ଜନଆନ୍ଦୋଳନ ମୁଣ୍ଡ ଟେକୁଛି, ତାକୁ ଗତ ୩୦ ବର୍ଷହେଲା ସେନାବାହିନୀ (ବା ତଥାକଥିତ ଅର୍ଦ୍ଧ ସାମରିକ ବାହିନୀ) ଦ୍ୱାରା ଦମନ କରିବାର ଚେଷ୍ଟା କରାଯାଉଛି । ଆଭ୍ୟନ୍ତରୀଣ "ଶାନ୍ତିରକ୍ଷା" କ୍ଷେତ୍ରରେ ସେନାବାହିନୀର ପ୍ରୟୋଗ ଅନେକ ସମୟରେ ବୁମେରାଙ୍ଗ୍ ଭଳି କାମ କରେ, ଏକଥା ବୋଧହୁଏ ଭାରତର ଶାସକ ସମ୍ପ୍ରଦାୟ ଶିଖି ନାହାନ୍ତି ।

ଫାଶୀଦଣ୍ଡ ବା ଯେ କୌଣସି ଧରଣର ମୃତ୍ୟୁଦଣ୍ଡ ଏବେ ପୃଥିବୀର ଏକ ନିନ୍ଦିତ ପ୍ରଥା । ସାମାନ୍ୟତମ ମାନବିକତାବୋଧ ଥିବା ବ୍ୟକ୍ତି କେବେହେଲେ ମୃତ୍ୟୁଦଣ୍ଡର ବୈଧତାକୁ ସ୍ୱୀକାର କରିବ ନାହିଁ । ଏଣୁ ଦୁନିଆର ଅନେକ ଦେଶର ଦଣ୍ଡସଂହିତାରୁ ମୃତ୍ୟୁଦଣ୍ଡକୁ ସମ୍ପୂର୍ଣ୍ଣ ରୂପେ ବାଦ୍‌ଦିଆ ସରିଲାଣି । ଆହୁରି କେତେକ ଦେଶ ଆଇନତଃ ନ ହେଲେ ମଧ୍ୟ କାର୍ଯ୍ୟତଃ ମୃତ୍ୟୁଦଣ୍ଡ ଉଠାଇ ଦେଇ ସାରିଛନ୍ତି ।

ମୃତ୍ୟୁଦଣ୍ଡ ମଧ୍ୟଯୁଗୀୟ ରାଜତନ୍ତ୍ରସୁଲଭ ଏକ ଘୃଣ୍ୟ, ଅମାନବିକ ଦଣ୍ଡପ୍ରଥା । ଏ ଯୁଗରେ ପୃଥିବୀର ନ୍ୟାୟବିତ୍‌ମାନେ ଏହି ପ୍ରଥାର ବୈଧତାକୁ ପ୍ରାୟତଃ ପ୍ରତ୍ୟାଖ୍ୟାନ କରିଛନ୍ତି । ମୃତ୍ୟୁଦଣ୍ଡ ପ୍ରାକୃତିକ ନ୍ୟାୟଶାସ୍ତ୍ରର ମୂଳଭିତ୍ତିର ବିରୁଦ୍ଧାଚରଣ କରେ । ଦୋଷୀକୁ

ଦଣ୍ଡ ଦିଆଯିବା ପଛରେ ଥିବା ମୌଳିକ ଉଦ୍ଦେଶ୍ୟ ମୃତ୍ୟୁଦଣ୍ଡ ଦ୍ୱାରା ବ୍ୟାହତ ହୁଏ । କାରଣ ଦଣ୍ଡିତ ବ୍ୟକ୍ତି ନିଜକୁ ସଂଶୋଧନ କରିବାର ସୁଯୋଗରୁ ବଞ୍ଚିତ ହୁଏ । ମନେକରାଯାଉ ଯେ ଜଣେ ବ୍ୟକ୍ତିକୁ ଏକ ଅଦାଲତରେ ଜେଲଦଣ୍ଡ ଆଦେଶ ଦେଲା । ଉକ୍ତ ବ୍ୟକ୍ତି ନିଜର ନିର୍ଦ୍ଦୋଷତା ସମ୍ପର୍କରେ ଆବଶ୍ୟକୀୟ ପ୍ରମାଣ ଯୋଗାଡ଼ କରି ନ ପାରିବାରୁ ଦୋଷୀ ପ୍ରମାଣିତ ହୋଇ ଜେଲ୍ ଭୋଗିବାକୁ ବାଧ୍ୟ । ମାତ୍ର ଏହା ହୋଇପାରେ ଯେ କିଛି ସମୟ ପରେ ଉକ୍ତ ବ୍ୟକ୍ତି ନିଜ ସପକ୍ଷରେ ଆବଶ୍ୟକୀୟ ପ୍ରମାଣ ଯୋଗାଡ଼ କରିବାରେ ସଫଳ ହୋଇପାରେ । ଫଳତଃ ଅଦାଲତରେ ପୁନଃ ସମୀକ୍ଷା କରାଗଲେ ସେ ବ୍ୟକ୍ତିଟିକୁ ମୁକ୍ତି ମିଳିବ । ମାତ୍ର ମୃତ୍ୟୁଦଣ୍ଡରେ ପ୍ରାଣତ୍ୟାଗ କରୁଥିବା ବ୍ୟକ୍ତି ଏହି ସ୍ୱାଭାବିକ ନ୍ୟାୟରୁ ବଞ୍ଚିତ ହୁଏ । ସେଇଥିପାଇଁ ପୃଥିବୀର କୌଣସି ଦାର୍ଶନିକ ବା ଚିନ୍ତାଶୀଳ ବ୍ୟକ୍ତି ଏହି ପ୍ରଥାକୁ ସ୍ୱାଗତ କରି ନାହାନ୍ତି ।

ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀ, ବିଦ୍ରୋହୀ ଓ ବିପ୍ଳବୀମାନଙ୍କୁ ନିପାତ କରିବା ଦିଗରେ ଶାସକଗୋଷ୍ଠୀ ବିଭିନ୍ନ ଦେଶରେ ଏହି ଦଣ୍ଡକୁ ଜୋର୍‌ସୋର୍ ପ୍ରୟୋଗ କରନ୍ତି । ଇରାନ୍‌ର ଧର୍ମଗୁରୁ ଆୟୋତୋଲା ଖୋମେନିଙ୍କ ନିର୍ଦ୍ଦେଶରେ ତାଙ୍କ ଦ୍ୱାରା ଗଠିତ ଏକ "ଗୋପନ ଅଦାଲତ"ର ରାୟ ଅନୁସାରେ ଇରାନ୍‌ର ପୂର୍ବତନ ପ୍ରଧାନମନ୍ତ୍ରୀ ହୋବେଦାଙ୍କୁ ଏବେ ମୃତ୍ୟୁଦଣ୍ଡ ଦିଆଯାଇଛି । ତାଙ୍କ ବ୍ୟତୀତ ପୂର୍ବତନ ଅତ୍ୟାଚାରୀ ଶାହା ଶାସନର ଅନ୍ୟ କେତେକ ସେନାପତି, ଅଫିସର ଓ ସୈନ୍ୟଙ୍କୁ ମଧ୍ୟ ଏହି "ଅଦାଲତ" ର ରାୟ ଅନୁଯାୟୀ ଗୁଳି ମାଡ଼ରେ ମରିବାକୁ ପଡ଼ିଛି । ଇରାନ୍‌ର ତଥାକଥିତ ବିପ୍ଳବୀ ପରିଷଦ ଓ ଇସ୍‌ଲାମୀୟ ସରକାର ମଧ୍ୟ ଏ ଦିଗରେ ପୃଥିବୀର ବିଭିନ୍ନ ଦେଶର ନିବେଦନ ଓ ପ୍ରତିକ୍ରିୟାକୁ ଅଗ୍ରାହ୍ୟ କରିଛନ୍ତି । ଆନ୍ତର୍ଜାତିକ ସ୍ତରରେ ମାନବିକ ଅଧିକାର ସପକ୍ଷରେ ଆନ୍ଦୋଳନ କରୁଥିବା ସଂସ୍ଥା 'ଆମ୍‌ନେଷ୍ଟି ଇଣ୍ଟରନ୍ୟାସ୍‌ନାଲ୍' ପକ୍ଷରୁ ଏଇମାସ ୮ ତାରିଖ ଦିନ ଲଣ୍ଡନ୍‌ରେ ପ୍ରକାଶିତ ଏକ ବିବୃତିରେ କୁହାଯାଇଛି ଯେ ଅଳ୍ପଦିନ ମଧ୍ୟରେ ରାଜନୈତିକ କାରଣରୁ ଇରାନ୍, କାମ୍ବୁଚିଆ (ଭିଏତ୍‌ନାମ ଅଧିକୃତ), ପାକିସ୍ତାନ, ସୋଭିଏତ୍ ରୁଷ, ତ୍ରିନିଦାଦ ଓ ଆମେରିକାରେ ବହୁ ଲୋକଙ୍କୁ ଫାଶୀଦଣ୍ଡ ଦିଆଯିବାର ସମ୍ଭାବନା ରହିଛି ।

ଭାରତର ପ୍ରାୟ ସବୁ ରାଜନୈତିକ ଦଳ ଭୁଟ୍ଟୋଙ୍କୁ ଫାଶୀ ଦିଆଯିବା ଘଟଣାରେ କ୍ଷୋଭ ପ୍ରକାଶ କରିଛନ୍ତି । ମୃତ୍ୟୁଦଣ୍ଡ ପ୍ରଥାର ବୈଧତା ବିରୁଦ୍ଧରେ ଏହି ଦଳର ନେତୃବର୍ଗ ଏପର୍ଯ୍ୟନ୍ତ କେବେ ସ୍ୱର ଉତ୍ତୋଳନ କରି ନଥିଲେ, କରୁନାହାନ୍ତି ବା କରିବେ ନାହିଁ । କାରଣ ସେମାନେ ମଧ୍ୟ 'ଆବଶ୍ୟକ' ବେଳେ ରାଜନୈତିକ ବିରୋଧୀମାନଙ୍କ ପ୍ରତି ଏହି ଦଣ୍ଡ ପ୍ରୟୋଗ କରି ଆସିଛନ୍ତି । ସାଧାରଣ ଅପରାଧୀଙ୍କ ପ୍ରତି ମୃତ୍ୟୁଦଣ୍ଡ ହୁକୁମ୍ ହେବା ଆମ ଦେଶର ନ୍ୟାୟାଳୟମାନଙ୍କରେ ଏକ ନିତିଦିନିଆ ଘଟଣା । ଏହି ଘୃଣ୍ୟ ପ୍ରଥାକୁ ଉଠାଇ ଦେବାକୁ ଆମ ଦେଶର ଗାନ୍ଧିବାଦୀ ଅହିଂସାବାଦୀମାନେ ଆନ୍ତରିକତାର ସହିତ କେବେହେଲେ ମତବ୍ୟକ୍ତ କରି ନାହାନ୍ତି ।

ବ୍ରିଟିଶ୍ ଶାସକ ଗୋଷ୍ଠୀ ଭାରତର ବଳିଷ୍ଠ ସ୍ୱାଧୀନତା ସଂଗ୍ରାମକୁ ଦବେଇ ଦେବାକୁ ଦେଶର ଶହ ଶହ ମଙ୍ଗଳ ପାଣ୍ଡେ, ଭଗତ ସିଂ, ଲକ୍ଷ୍ମଣ ନାୟକ ଓ ରଘୁ-ଦିବାକରଙ୍କୁ ଫାଶୀ ଦେଇଥିଲେ । ସେହି ସାମ୍ରାଜ୍ୟବାଦୀଙ୍କ କଳଙ୍କିତ ପଦାଙ୍କ ଅନୁସରଣ କରିବାରେ ଆମର କଂଗ୍ରେସ ଓ ଜନତା ଦଳର ନେତାମାନେ ସାମାନ୍ୟ ଅବହେଳା କରି ନାହାନ୍ତି । ନକ୍ସଲପନ୍ଥୀ ଆନ୍ଦୋଳନରେ ଯୋଗଦେବା ଅପରାଧରେ ଅପରାଧୀ, ଆନ୍ଧ୍ରର ଦୁଇଜଣ ଋଷୀ କିଷ୍ଟା ଗୌଡ଼ ଓ ଜଙ୍ଗମ ଭୂମେୟା ଜରୁରୀ ପରିସ୍ଥିତିର ଆରମ୍ଭ କାଳରେ ୧୯୭୫ ଡିସେମ୍ବର ପହିଲା ଦିନ ହାଇଦ୍ରାବାଦ ରୁଦ୍ଧକାରାର ଅନ୍ତରାଳରେ ଫାଶୀ ଖୁଣ୍ଟରେ ଝୁଲିଲେ । ସେମାନଙ୍କୁ ମୁକ୍ତି ଦେବା ପାଇଁ ତତ୍‌କାଳୀନ ଇନ୍ଦିରା ସରକାରଙ୍କ ନିକଟରେ ଦେଶର ଗଣତନ୍ତ୍ରକାମୀ, ସଚେତନ ଜନସାଧାରଣ ଅନୁରୋଧ ଜଣାଇଲେ ମଧ୍ୟ ଇନ୍ଦିରା ସରକାର ତାହା ପ୍ରତ୍ୟାଖ୍ୟାନ କରିଥିଲେ । ସ୍ମରଣ କରାଯାଇପାରେ ଯେ ସେମାନଙ୍କୁ ଫାଶୀଦଣ୍ଡରୁ ବଞ୍ଚାଇବାକୁ ଗଠିତ ହୋଇଥିବା ଏକ ଜାତୀୟ ଅଭିଯାନ କମିଟିର ଆବାହକ ଥିଲେ ସେ ସମୟରେ ସୋସଲିଷ୍ଟ ନେତା ଓ ବର୍ତ୍ତମାନର କେନ୍ଦ୍ର ଶିଳ୍ପମନ୍ତ୍ରୀ ଜର୍ଜ ଫର୍ଣ୍ଣାଡିସ୍ । କିଷ୍ଟା ଓ ଭୂମେୟା ଫାଶୀ ପାଇବା ପରେ ଫର୍ଣ୍ଣାଡିସ୍ ସାହେବ୍ ସଦର୍ପେ ଘୋଷଣା କରିଥିଲେ, "ଆମେ ଏହି ଫାଶୀଦଣ୍ଡର ପ୍ରତିଶୋଧ ନେବୁ" । ମାତ୍ର ତା'ର ଅଢ଼େଇ ବର୍ଷ ପରେ ଜନତା ସରକାରଙ୍କ ଅମଳରେ ତାମିଲନାଡୁର କୋଏମ୍ବାଟୁର ଜେଲ୍‌ରେ ଆଉ ଜଣେ ଋଷୀ ବିପ୍ଳବୀ କ୍ରିଷ୍ଣନ୍ ଚେଟୀଙ୍କୁ ଲୋକଲୋଚନର ଅନ୍ତରାଳରେ ଫାଶୀ ଦିଆଗଲା । ଏହି ଫାଶୀଦଣ୍ଡକୁ ସମାଜ ଓ ସର୍ବସାଧାରଣଙ୍କ ଠାରୁ ଗୋପନ ରଖିବାକୁ ତାମିଲ୍‌ନାଡୁର ଆନ୍ନା-ଡି.ଏମ୍.କେ. ସରକାର ଓ ଦିଲ୍ଲୀର ଜନତା ସରକାର ସମସ୍ତ ଉଦ୍ୟମ ମଧ୍ୟ କଲେ । ତାମିଲ୍‌ନାଡୁର ଗାନ୍ଧୀବାଦୀ ରାଜ୍ୟପାଳ ଶ୍ରୀ ପ୍ରଭୁଦାସ ପଟ୍ଟୱାରୀ, ଭାରତର ଗାନ୍ଧୀବାଦୀ ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀ ସମସ୍ତେ ଏହି ମଧ୍ୟଯୁଗୀୟ ସାମନ୍ତୀ ଦରବାରସୁଲଭ ବର୍ବର ମୃତ୍ୟୁଦଣ୍ଡକୁ ସହାସ୍ୟ ବଦନରେ ମଞ୍ଜୁର କଲେ । ଆଉ ଭୂତପୂର୍ବ ସୋସାଲିଷ୍ଟ ଶ୍ରୀ ଜର୍ଜ ଫର୍ଣ୍ଣାଣ୍ଡିସ୍ ମଧ୍ୟ ବିପ୍ଳବୀ କ୍ରିଷ୍ଣନ୍ ଚେଟୀଙ୍କ ପାଇଁ ସାମାନ୍ୟ ଦରଦ ଦେଖାଇଲେ ନାହିଁ ।

ଏଣୁ ନିଜ ଦେଶରେ ଘୃଣିତ ମୃତ୍ୟୁଦଣ୍ଡକୁ କାଏମ୍ ରଖିଥିବା ଓ ତାକୁ ବିପ୍ଳବୀମାନଙ୍କ ଉପରେ ଅକୁଣ୍ଠିତଭାବେ ପ୍ରୟୋଗ କରୁଥିବା ଭାରତର ଇନ୍ଦିରା-ମୋରାରଜୀ-ଫର୍ଣ୍ଣାଡିସ୍ ସମ୍ପ୍ରଦାୟ ସ୍ୱର୍ଗତ ଭୁଟ୍ଟୋଙ୍କ ପାଇଁ କେବଳ କୁମ୍ଭୀର କାନ୍ଦଣା ହିଁ କାନ୍ଦୁଛନ୍ତି ।

ଅପର ପକ୍ଷରେ ପାକିସ୍ଥାନ ବା ଭାରତରୁ ଆରମ୍ଭ କରି ପୃଥିବୀର ସବୁ ଦେଶର ଜନସାଧାରଣ ଏହି ମୃତ୍ୟୁଦଣ୍ଡକୁ ଯେଉଁ ସ୍ୱରରେ ନିନ୍ଦା କରିଛନ୍ତି, ତାହା ହେଉଛି ଦୃଢ଼ ମାନବିକତାର ସ୍ୱର । ବିଶ୍ୱ ଜନଗଣଙ୍କ ଏହି ନ୍ୟାୟମୁଖୀ ଚିନ୍ତା-ଚେତନାକୁ ଭିତ୍ତିକରି ସାରା ପୃଥିବୀରେ ମୃତ୍ୟୁଦଣ୍ଡ ବିରୋଧୀ ଗଣଆନ୍ଦୋଳନ ଗଢ଼ି ତୋଳିବା ଆଜିର ଏକ ଐତିହାସିକ ଆବଶ୍ୟକତା ।

'ବିପ୍ଳବ ସନ୍ଦେଶ'
ମଇ ୧୯୭୯



# ଶିଶୁ ବର୍ଷରେ ଶିଶୁ ଦୁର୍ଗତି

ଜାତିସଂଘର ଶିଶୁକଲ୍ୟାଣକାରୀ ସଂସ୍ଥା ୟୁନିସେଫ୍ (UNICEF) ତରଫରୁ ପ୍ରାୟ ଦେଢ଼ ବର୍ଷ ତଳେ ପୃଥିବୀର ବିଭିନ୍ନ ଦେଶର ଶିଶୁମାନଙ୍କ ଅବସ୍ଥା ସମ୍ପର୍କରେ ଏକ ବିବରଣୀ ପ୍ରକାଶ ପାଇଥିଲା । ସେହି ବିବରଣୀ ଅନୁସାରେ ଭାରତରେ ପ୍ରତି ଶହେରେ ୩୭ ଜଣ ଶିଶୁ ସମ୍ପୂର୍ଣ୍ଣ ଭୋକରେ ଶୋଇବାକୁ ଯା'ନ୍ତି ଓ ଆଉ ପ୍ରାୟ ସେତିକି ଜଣ କିଞ୍ଚିତ୍‌ମାତ୍ର ଖାଦ୍ୟ ଖାଇ ରାତି ବିତାନ୍ତି । ଅର୍ଥାତ୍ ଆମ ଦେଶର ପ୍ରତି ଦଶ ଜଣରେ ସାତଜଣ ଶିଶୁ ଏକ ପ୍ରକାର ଖାଲି ପେଟରେ ବିଛଣାରେ ପଡ଼ି ରହନ୍ତି ।

୨୫ କୋଟି ଭାରତୀୟ ଶିଶୁଙ୍କର ଏହି ଦୟନୀୟ ପରିସ୍ଥିତିର ନଗ୍ନମଞ୍ଚ ଉପରେ ରାଷ୍ଟ୍ରପତି ସଞ୍ଜୀବରେଡ଼ି ଅଳ୍ପଦିନ ତଳେ ଦିଲ୍ଲୀ ରାଜପଥରେ ସୁରମ୍ୟ ଖୋଲା ଜିପ୍‌ରେ ବସି, ଦିଲ୍ଲୀ ଆକାଶରେ ଶହ ଶହ ରଙ୍ଗୀନ ବେଲୁନ୍ ଉଡ଼ାଇ ଭାରତରେ ଆର୍ନ୍ତଜାତିକ ଶିଶୁ ବର୍ଷର ଉଦ୍‌ଘାଟନ ଉତ୍ସବ ପାଳନ କରିଛନ୍ତି ଏବଂ ନବ୍ୟ-ଧନିକ ଶ୍ରେଣୀର ଆଭିଜାତ୍ୟ ସମ୍ପନ୍ନ କେଇ ଶହ ଶିଶୁଙ୍କ ଗହଣରେ ଲଜ୍ଜାହୀନ ଭାବେ ଘୋଷଣା କରିଛନ୍ତି ଯେ ଏହି ଶିଶୁବର୍ଷର ସମସ୍ତ କାର୍ଯ୍ୟକ୍ରମ "ବଞ୍ଚିତ ଓ ଦାରିଦ୍ର୍ୟ-ପୀଡ଼ିତ" ଶିଶୁମାନଙ୍କ ମଙ୍ଗଳ ପାଇଁ ଉଦ୍ଦିଷ୍ଟ ହେବ । ଯେଉଁ ଦେଶର ପ୍ରଧାନମନ୍ତ୍ରୀମାନେ ପରମ୍ପରାକ୍ରମେ ରୋଟାରୀ ଓ ଲାୟନ୍‌ସ କ୍ଲବ୍‌ର ନୃତ୍ୟଶାଳାରେ 'ଗରୀବି ହଟାଓ' ଓ ସମାଜବାଦର ଉଦ୍‌ବୋଧନ ଦେଇ ଆସୁଛନ୍ତି, ସେ ଦେଶର ରାଷ୍ଟ୍ରପତିଙ୍କଠାରୁ ଆଉ କି ଆଚରଣ ବା ଆଶା କରାଯିବ ?

ମାତ୍ର ୩ ବର୍ଷ ତଳେ ଜାତିସଂଘର ଆନୁକୂଲ୍ୟରେ ପୃଥିବୀ ବ୍ୟାପୀ 'ଆନ୍ତର୍ଜାତିକ ମହିଳାବର୍ଷ' ପାଳିତ ହୋଇଥିଲା । ଶୋଷଣ, ନିର୍ଯ୍ୟାତନା ଓ ସାମାଜିକ ଅସମ୍ମାନରୁ ନାରୀମାନଙ୍କୁ ମୁକ୍ତ କରିବାକୁ ଚରିଆଡ଼େ ବହୁ ଘୋଷଣା ପ୍ରଚରିତ ହେଲା ; ବହୁ ଉତ୍ସବରେ ଫିତା କଟାଗଲା ଓ ବହୁ ପରିକଳ୍ପନାର ଭିତ୍ତି ସ୍ଥାପନ କରାଗଲା । ମାତ୍ର ତା ସତ୍ତ୍ୱେ ସାରା ପୃଥିବୀର, ବିଶେଷ କରି ଶୋଷିତ ତୃତୀୟ ବିଶ୍ୱର ନାରୀମାନଙ୍କର ସାମାଜିକ–ଅର୍ଥନୈତିକ ଅବସ୍ଥାରେ ସାମାନ୍ୟ ପରିବର୍ତ୍ତନ ଆସିଲା ନାହିଁ । କାରଣ ପୁଞ୍ଜିବାଦ ହେଉ ବା ସାମନ୍ତବାଦ ହେଉ କିମ୍ବା ଏ ଦୁଇଟିର ଘଣ୍ଟାଚକଟାରେ ଗଢ଼ା ଅନ୍ୟ ଯେ କୌଣସି ପ୍ରକାରର ସମାଜ ବ୍ୟବସ୍ଥା ହେଉ – କେବଳ ସମାଜବାଦୀ ରାଷ୍ଟ୍ର ଛଡ଼ା ଅନ୍ୟ ସମସ୍ତ ଦେଶରେ ନାରୀମାନଙ୍କୁ ବିଳାସ ବ୍ୟସନର ଓ ସନ୍ତାନ ଉତ୍ପାଦନର ସାମଗ୍ରୀରୂପେ ଗ୍ରହଣ କରାଯାଇଥାଏ । ଏଣୁ ଶୋଷଣଭିତ୍ତିକ ସମାଜ ବ୍ୟବସ୍ଥାକୁ ଅକ୍ଷୁଣ୍ଣ ରଖି ନାରୀମାନଙ୍କୁ ଶୋଷଣରୁ ମୁକ୍ତ କରିବାର ପ୍ରବଞ୍ଚନାପୂର୍ଣ୍ଣ 'ୟୁଟୋପିଆ' ସର୍ବଦା ନିଷ୍ଫଳ ହେବାକୁ ବାଧ୍ୟ ଓ ତାହାହିଁ ହେଲା । ଏଣୁ ଏହି ଆନ୍ତର୍ଜାତିକ ଶିଶୁବର୍ଷ ମଧ୍ୟ ସେହିଭଳି ଏକ ପ୍ରତାରଣାମୂଳକ ଧ୍ୱନୀ ବୋଲି ପ୍ରମାଣିତ ହେବ ।

୧୯୭୧ର ଜନଗଣନା ଭିତ୍ତି ଉପରେ ୧୯୭୬ ମସିହାରେ ଭାରତରେ ଶିଶୁଙ୍କ ସଂଖ୍ୟା (୧୪ ବର୍ଷରୁ କମ୍) ୨୫ କୋଟି ବୋଲି ହିସାବ ଲଗାଯାଇଥିଲା । ଏହି ସଂଖ୍ୟା ସାରା ଆମେରିକା ଦେଶର ଲୋକ ସଂଖ୍ୟାଠାରୁ ମଧ୍ୟ ବେଶୀ । କ୍ଷୁଧା ଓ କ୍ଷୁଧାଜନିତ

ରୋଗ ଯୋଗୁଁ ଭାରତରେ ଜନ୍ମ ହେଉଥିବା ଶିଶୁଙ୍କ ମଧ୍ୟରୁ ଶହେରେ ୪୦ ଜଣ ପାଞ୍ଚବର୍ଷ ବୟସ ହେବା ପୂର୍ବରୁ ମୃତ୍ୟୁବରଣ କରନ୍ତି । ପ୍ରତି ମାସରେ ଦେଶର ପ୍ରାୟ ଏକ ଲକ୍ଷ ଶିଶୁ ଏହିଭଳି ଅନାହାର ଓ ଅପୁଷ୍ଟି ଭୋଗି ମୃତ୍ୟୁ ମୁଖରେ ପଡୁଛନ୍ତି । ଏତାଦୃଶ କାଳିମାମୟ ପରିସ୍ଥିତିରେ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ଭାରତର ଲେଖକମାନଙ୍କୁ ଶିଶୁମାନଙ୍କ ପାଇଁ ଏବର୍ଷ ଅନ୍ତତଃ ଶହେଟି ବହି ଲେଖିବାକୁ ଆହ୍ୱାନ ଦେଇଛନ୍ତି । ସେ ବୋଧହୁଏ ଭୁଲି ଯାଇଛନ୍ତି ଯେ ଗ୍ରାମୀଣ ଭାରତର ଶତକଡ଼ା ୮୦ ଜଣ ଶିଶୁ କେବେ ବିଦ୍ୟାଳୟ ବାରଣ୍ଡା ଦେଖିବାର ସୁଯୋଗ ପାଆନ୍ତି ନାହିଁ । ସୂଚନା ବିଭାଗ ମନ୍ତ୍ରୀ ଲାଲକୃଷ୍ଣ ଆଡ଼୍ୱାଣୀ ମଧ୍ୟ ଶିଶୁକଲ୍ୟାଣ ପାଇଁ ବମ୍ବେ ନଗରୀରେ ୭୦ ଲକ୍ଷ ଟଙ୍କା ବ୍ୟୟରେ ଏକ ଦାମୀକା ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ରର ଶୁଭ ଦେଇଛନ୍ତି । ଭବିଷ୍ୟତରେ ଏଥିରୁ ନିର୍ମିତ ଚଳଚିତ୍ରଗୁଡ଼ିକୁ ଦେଖିବାର ସୁଯୋଗ କେତେଜଣ ଶିଶୁଙ୍କୁ ମିଳିବ, ସେ ସମ୍ପର୍କୀୟ ସୂଚନା ଆଡ଼୍ୱାଣୀ ସାହେବ ଏପର୍ଯ୍ୟନ୍ତ ପ୍ରକାଶ କରି ନାହାନ୍ତି ।

ଅଭାବ, ଦାରିଦ୍ର୍ୟ ଓ ଅଶିକ୍ଷାର ରାଷ୍ଟ୍ରୀୟ ପରିବେଶରେ ଆମ ଦେଶର କୋଟି କୋଟି ଶିଶୁ ନିରକ୍ଷର ହୋଇ ରହିବାକୁ ବାଧ୍ୟ ହେଉଛନ୍ତି । ଚୀନ୍ ପ୍ରଭୃତି ସମାଜବାଦୀ ରାଷ୍ଟ୍ରମାନଙ୍କରେ ବିନା ବ୍ୟତିକ୍ରମରେ ସବୁ ଶିଶୁଙ୍କୁ ଉପଯୁକ୍ତ ଶିକ୍ଷା ଦେବାର ରାଷ୍ଟ୍ରାୟତ୍ତ ବ୍ୟବସ୍ଥା ରହିଛି । ଏଭଳି ଦେଶକୁ ବାଦ୍‌ଦେଇ ଦେଖିଲେ ମଧ୍ୟ ମାଲୟ ଓ ଥାଇଲାଣ୍ଡ ଭଳି ଅନଗ୍ରସର ଦେଶମାନଙ୍କରେ ଶିଶୁ ଶିକ୍ଷା ବାବଦରେ ପ୍ରତ୍ୟେକ ଶିଶୁ ପାଇଁ ଦୈନିକ ହାରାହାରି ୫ଟଙ୍କା ଖର୍ଚ୍ଚ କରାଯାଉଥିବାବେଳେ ଭାରତରେ ମାତ୍ର ୫୦ ପଇସା ଖର୍ଚ୍ଚ କରାଯାଏ । ଅନ୍ୟ ପକ୍ଷରେ ଜାତୀୟ ବଜେଟ୍‌ର ବିପୁଳ ଅଂଶ ପ୍ରତିରକ୍ଷା ଓ ପୋଲିସ ବିଭାଗରେ ହିଁ ବ୍ୟୟ କରାଯାଏ ।

ନିର୍ଦ୍ଦିଷ୍ଟଭାବେ କହିବାକୁ ଗଲେ ବାର୍ଷିକ ବଜେଟର ମାତ୍ର ଶତକଡ଼ା ୩ ଭାଗ ଶିକ୍ଷା ପାଇଁ ଖର୍ଚ୍ଚ ହୁଏ । ପୁଣି ଏହାର ଶତକଡ଼ା ୩୦ ଭାଗ, ଅର୍ଥାତ୍ ବାର୍ଷିକ ବଜେଟ୍‌ର ଶତକଡ଼ା ଶୂନ ଦଶମିକ ୯ ଭାଗ ଅର୍ଥାତ୍ ଶହେ ଟଙ୍କାରେ ମାତ୍ର ୯୬ ପଇସାହିଁ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ଦିଗରେ ଖର୍ଚ୍ଚ କରାଯାଏ । ଏଣୁ ଏହାକୁ ଦେଶର ବ୍ୟାପକ ଗ୍ରାମାଞ୍ଚଳର କୋଟି କୋଟି ଗରିବ ପରିବାରର ଶିଶୁମାନଙ୍କୁ ସବୁଦିନ ପାଇଁ ଅଶିକ୍ଷା ଅନ୍ଧାରରେ ରଖିବାର ସରକାରୀ ଚକ୍ରାନ୍ତ ଛଡ଼ା ଆଉ କଣ କୁହାଯାଇପାରେ ? ଗତ ତିନି ଦଶନ୍ଧି ବ୍ୟାପି ଏହି ଚକ୍ରାନ୍ତର ଫଳ ସ୍ୱରୂପ ଏବେ ଦେଶରେ ୧୦ ବର୍ଷରୁ ୧୪ ବର୍ଷ ବୟସ୍କ ଶିଶୁମାନଙ୍କ ମଧ୍ୟରେ ଶତକଡ଼ା ୬୦ ଜଣ ନିରକ୍ଷର । ପୁନଶ୍ଚ, ଦେଶର ୬ ଲକ୍ଷ ପ୍ରାଥମିକ ଓ ମଧ୍ୟ ବିଦ୍ୟାଳୟଗୁଡ଼ିକରୁ ଶତକଡ଼ା ୬୫ ରୁ ଅଧିକ ଭାଗ ସ୍କୁଲ ଗାଁ ଅଞ୍ଚଳରେ ରହିଥିଲେ ମଧ୍ୟ ଖେଳ ପଡ଼ିଆ, ଖେଳ ଉପକରଣ, ବିଜ୍ଞାନାଗାର ଓ ପାଠାଗାର ପ୍ରଭୃତି ପାଇଁ ବଜେଟ୍‌ରେ ଯେଉଁ ବ୍ୟବସ୍ଥା ହୁଏ ତା'ର ଶତକଡ଼ା ୯୦ ଭାଗ କେବଳ ସହରାଞ୍ଚଳ ସ୍କୁଲମାନଙ୍କରେ ଖର୍ଚ୍ଚ କରାଯାଏ ।

ଗ୍ରାମାଞ୍ଚଳର ଗରିବ ଚାଷୀ, ମୂଲିଆ, କୌଳିକ କାରିଗର (ବଢ଼େଇ, କମାର ପ୍ରଭୃତି), ହରିଜନ ଓ ଆଦିବାସୀ ପରିବାର ଗୁଡ଼ିକର ଶିଶୁମାନେ ଘୋର ଅନାହାର ଓ ଅପୁଷ୍ଟିର ଶୀକାର

ହେଉଛନ୍ତି । ଭାରତର ୨୫ କୋଟି ଶିଶୁଙ୍କ ମଧ୍ୟରୁ ପ୍ରାୟ ୨୦ କୋଟି ଏହି ବ୍ୟାପକ ଗ୍ରାମାଞ୍ଚଳରେ ଅଛନ୍ତି । ସରକାରୀ ହିସାବ ଅନୁସାରେ ସେମାନଙ୍କ ମଧ୍ୟରୁ ୯ କୋଟି ୨୦ ଲକ୍ଷରୁ ବେଶୀ ଶିଶୁ ଦାରିଦ୍ର୍ୟ ସୀମାରେଖା ତଳେ ପଡ଼ି ରହିଛନ୍ତି । ଭୋକ ଜ୍ୱାଳାର ଶୀକାରହୋଇ ଦେଶର ପ୍ରାୟ ୧୫ ଲକ୍ଷ ଶିଶୁ ଭିକ୍ଷାବୃତ୍ତିର ଆଶ୍ରୟ ନେଇଛନ୍ତି ଓ ୩କୋଟି ଶିଶୁ ଦୋକାନ, ହୋଟେଲ, ଖଣି, ଖାଦାନ ପ୍ରଭୃତିରେ ଦୈନିକ ୧୪ ଘଣ୍ଟା ପରିଶ୍ରମ କରି ନିଜର ଜୀବନ ବଞ୍ଚାଉଛନ୍ତି । ଶିଶୁମାନଙ୍କୁ ଶ୍ରମିକରୂପେ ନିଯୁକ୍ତି ଦେବା ବିରୁଦ୍ଧରେ କେତେକ ରାଜ୍ୟରେ କାଁ ଭାଁ ଆଇନ୍ ପ୍ରଣୟନ ହୋଇଥିଲେ ମଧ୍ୟ ସେଗୁଡ଼ିକୁ କାର୍ଯ୍ୟକାରୀ କରାଯାଉ ନାହିଁ – କରାଯାଇପାରିବ ନାହିଁ । କାରଣ, ଅନାହାରରେ ମରିବା ବା କ୍ରୀତଦାସ ଭଳି ଲୁହଲହୁ ଝରା କଠିନ ପରିଶ୍ରମ କରି ଢ଼ୋକେ ପିଇ, ଦଣ୍ଡେ ଜିଇଁ ନୀତିରେ ବଞ୍ଚି ରହିବା – ଏ ଦୁଇଟି ବିକଳ୍ପ ମଧ୍ୟରୁ ପଛଟିକୁ ବାଛିନେବାକୁ ଏହି ୩ କୋଟି ଶିଶୁ ବାଧ ହେଉଛନ୍ତି । ଠିକ୍ ଶବ୍ଦାବଳୀରେ କହିବାକୁ ଗଲେ, ଦେଶରେ ଚାଲିଥିବା ଅର୍ଦ୍ଧସାମନ୍ତୀ ଅର୍ଦ୍ଧ ଔପନିବେଶିକ ଶାସନ, ଶୋଷଣ ବ୍ୟବସ୍ଥା ଏହି ଶିଶୁମାନଙ୍କୁ ଏତଦୃଶ 'ଭାଗ୍ୟ' ଆଦରି ନେବାକୁ ବାଧ କରିଛି ।

ଶିଶୁମାନଙ୍କର ଅନାହାର, ଅପୁଷ୍ଟି, ଅଶିକ୍ଷା ବା ଶୋଷଣ ଓ ଯାତନାର ସମସ୍ୟା ଦେଶରେ ଏକ ବିଚ୍ଛିନ୍ନ ଘଟଣା ନୁହେଁ । ଏହାର କୌଣସି ସ୍ୱତନ୍ତ୍ର କାରଣ ନାହିଁ ବା କୌଣସି ସ୍ୱତନ୍ତ୍ର ଉପାୟରେ ଏହାର ନିରାକରଣ ମଧ୍ୟ ସମ୍ଭବ ନୁହେଁ । ଯେ ପର୍ଯ୍ୟନ୍ତ କୃଷି କ୍ଷେତ୍ରରେ ଲଙ୍ଗଳ ଚଳାଉଥିବା ମଣିଷ ସେହି ଜମିର ମାଲିକ ହୋଇ ନଥିବ ଏବଂ ଯେ ପର୍ଯ୍ୟନ୍ତ ରୁଷ୍, ଆମେରିକା ଭଳି ସାମ୍ରାର୍ଜ୍ୟବାଦୀ ଶୋଷକ ଶକ୍ତିମାନେ ସିଧାସଳଖ ଭାବେ ଓ ବିରଳା, ଟାଟା, ଗୋଏଙ୍କା ବା 'ପବ୍ଲିକ୍ ସେକ୍ଟରେ' ପ୍ରଭୃତି ନାମଧାରୀ ଗୁମାସ୍ତା-ପୁଞ୍ଜିପତି ସଂସ୍ଥା ମାଧ୍ୟମରେ ଭାରତର ବିପୁଳ ପ୍ରାକୃତିକ ସମ୍ପଦ ଓ ଅକଳନ ଶ୍ରମଶକ୍ତିକୁ ଲୁଟ୍ କରି ଚାଲିଥିବେ, ସେ ପର୍ଯ୍ୟନ୍ତ ଦେଶର କୋଟି କୋଟି ଖଟିଖିଆ ଜନସାଧାରଣ ଓ ସେମାନଙ୍କର ପିଲାକବିଲା ଏହି ଘୋର ଦାରିଦ୍ର୍ୟ ଭୋଗିବାକୁ ବାଧ । ଆନ୍ତର୍ଜାତିକ ଶିଶୁବର୍ଷ ବା ଶିଶୁଶତାବ୍ଦୀ କେବେ ଏହି ସଂକଟର ଜବାବ ଦେଇପାରିବ ନାହିଁ । ଜାତିସଂଘର ସଦରମହକୁମାରୁ ଆରମ୍ଭକରି ଦିଲ୍ଲୀ-ଭୁବନେଶ୍ୱର ପର୍ଯ୍ୟନ୍ତ ଯେତେ ସରକାରୀ ଉତ୍ସବ ପାଳିତ ହେବ, କୌଣସିଟି ଭୋକିଲା ଶିଶୁ ପାଇଁ ମୁଠାଏ ଭାତ ବା ଲଙ୍ଗଳା ପିଲା ପାଇଁ ଖଣ୍ଡିଏ ଜାମା ପହଞ୍ଚାଇ ପାଇବ ନାହିଁ । ପ୍ରଚଳିତ ଶାସନ ବ୍ୟବସ୍ଥାକୁ ଭାଙ୍ଗି ଜନ-ଗଣତନ୍ତ୍ର ପ୍ରତିଷ୍ଠା କରି ସମାଜବାଦୀ ଅର୍ଥନୀତିର ଶୁଭାରମ୍ଭ ହେଲେ ହିଁ କେବଳ ଏହି ଦୟନୀୟ ଓ ଅମାନୁଷିକ ପରିସ୍ଥିତିର ଅବସାନ ଘଟିବ । ଏଣୁ ଶୋଷିତ ଜନଗଣଙ୍କ ଅବିକଶିତ ଆତ୍ମଶକ୍ତିକୁ ସୁପରିଭାଷିତ ରାଜନୈତିକ ସଚେତନତାରେ ପରିଣତ କରି ଯେଉଁ ସଙ୍ଗଠନ ବା ଆଗୁଆ ବାହିନୀ ଦେଶବ୍ୟାପି ମୁକ୍ତି ସଂଗ୍ରାମର ପତାକା ଉତ୍ତୋଳନ କରିବ, ସେହି ସଂଗଠନର ଉଦ୍ଦାମ ଜୟଯାତ୍ରାକୁ ଦେଶର ବୁଭୁକ୍ଷୁ ଶିଶୁସମାଜ ନୀରବରେ ଅପେକ୍ଷା କରିଛି ।

'ବିପ୍ଳବ ସନ୍ଦେଶ'
ଫେବୃଆରୀ ୧୯୭୯



# ଶିଶୁ ଅଧିକାର ପ୍ରତି ବିଶ୍ୱାସଘାତକତା

**ବି**ଶ୍ୱର ଭବିଷ୍ୟତ ହେଉଛନ୍ତି ଶିଶୁମାନେ । ସେମାନେ ଆମର ଭବିଷ୍ୟତ, ସେମାନେ ଆମର ଆଶା, ଭରସା । ଆମର ଏହି ଶିଶୁ ମାନଙ୍କର ସଂଖ୍ୟା ଚଳିତ ଆନ୍ତର୍ଜାତିକ ଶିଶୁ ବର୍ଷରେ ୧୫୫ କୋଟି ୮୨ ଲକ୍ଷ । ଭାରତରେ ୧୪ ବର୍ଷ ବୟସ ମଧ୍ୟରେ ଥିବା ଶିଶୁଙ୍କ ସଂଖ୍ୟା ଅନ୍ୟୁନ ୨୫ କୋଟି ।

ପୃଥିବୀ ପୃଷ୍ଠରେ ପ୍ରତ୍ୟେକ ଶିଶୁର ସୁଖରେ ରହିବାର ଅଧିକାର ଅଛି । ଅଥଚ କୋଟି କୋଟି ପୁଅ ଝିଅ ସୁଖ କଅଣ ବାଲ୍ୟାବସ୍ଥାରେ ଜାଣନ୍ତି ନାହିଁ । ସୁଖ, ଶାନ୍ତି, ସୁଯୋଗରୁ ସେମାନେ ଚିର ବଞ୍ଚିତ । ବିକାଶମୁଖୀ ଦେଶରେ ଏବଂ ବିଶେଷକରି ଆମ ଭାରତରେ ଶିଶୁମାନଙ୍କର ଅବସ୍ଥା ଅତି ଶୋଚନୀୟ । ଜାତିସଂଘର ଆନ୍ତର୍ଜାତିକ ଜରୁରୀ ଶିଶୁପାଣ୍ଠି ସଂସ୍ଥା ପକ୍ଷରୁ ପ୍ରକାଶ ୫୦ କୋଟିରୁ ଅଧିକ ଶିଶୁ ଅତି କଠିନ ଅବସ୍ଥାରେ ଜୀବନ ଯାପନ କରନ୍ତି । ବିକାଶମୁଖୀ ଦେଶ ଗୁଡ଼ିକରେ ପ୍ରତି ପଞ୍ଚମ ଶିଶୁ (ପାଞ୍ଚ ଜଣରେ ଜଣେ) ପାଞ୍ଚ ବର୍ଷ ନପୂରୁଣୁ ମୃତ୍ୟୁ ମୁଖରେ ଯାଆନ୍ତି । ଲାଟିନ ଆମେରିକାରେ ପ୍ରତି ୩୦ ସେକେଣ୍ଡରେ ଗୋଟିଏ କରି ଶିଶୁ ଅନାହାର ମୃତ୍ୟୁବରଣ କରନ୍ତି । ଅର୍ଥାତ୍ ବର୍ଷକୁ ୧୦ ଲକ୍ଷ ୧୧ ହଜାର ୨୫୦ ଶିଶୁ ଅନାହାର ମୃତ୍ୟୁ ଭୋଗନ୍ତି । ସବୁଠାରୁ ଅମାନୁଷିକ ଘଟଣା ଘଟେ ଦକ୍ଷିଣ ଆଫ୍ରିକାରେ । ପାଞ୍ଚବର୍ଷ ନପୂରୁଣୁ 'କଳା' ଶିଶୁମାନଙ୍କ ମଧ୍ୟରୁ ଅଧାଅଧି ଶିଶୁ ଦାରିଦ୍ର୍ୟ ଯୋଗୁ ଅନାହାର ଓ ଅର୍ଦ୍ଧାହାର ରହି ଏବଂ ଚିକିତ୍ସା ନପାଇ ମୃତ୍ୟୁବରଣ କରନ୍ତି ।

ଆମ ଭାରତରେ ମଧ୍ୟ ଅନ୍ୟୁନ ୭୫ ଭାଗ ଶିଶୁ ଦାରିଦ୍ର୍ୟ ସୀମାରେଖା ତଳେ । ପ୍ରତି ୧୦ ଜଣରେ ୭ ଜଣ ଶିଶୁ ପ୍ରତିଦିନ ରାତିରେ ଉପବାସରେ ଶୁଅନ୍ତି । ଏଇମାନେ ଅପୁଷ୍ଟି ଜନିତ କାରଣରୁ ନାନା ପ୍ରକାର ଦୁରାରୋଗ୍ୟ ରୋଗ ଭୋଗନ୍ତି । ଏପରିକି ଅନେକ ଅନ୍ଧ ହୋଇଯାଆନ୍ତି । ଅନେକ ବିକଳାଙ୍ଗ ହୁଅନ୍ତି । ଅନେକ କୁଷ୍ଠ ରୋଗରେ ସଢ଼ନ୍ତି ।

ଆନ୍ତର୍ଜାତିକ ଶ୍ରମ ସଂଗଠନ ହିସାବ ଅନୁସାରେ ଆମେରିକା, ବ୍ରିଟେନ୍, ପଶ୍ଚିମ ଜର୍ମାନୀ, ଜାପାନ ସମେତ ପୁଞ୍ଜିବାଦୀ ଦେଶ ଗୁଡ଼ିକରେ ୫ କୋଟି ୨୦ ଲକ୍ଷ ଶିଶୁ ୧୫ ବର୍ଷ ନପୂରୁଣୁ ପାଠ ପଢ଼ା ଛାଡ଼ି ମଜୁରୀ ପାଇଁ କାମ କରିବାକୁ ଯିବାକୁ ବାଧ୍ୟ ହୁଅନ୍ତି । ବାଲ୍ୟାବସ୍ଥାର ସୁଯୋଗରୁ ବଞ୍ଚିତ ହେଉଥିବା ଏହି ଶିଶୁ ମାନଙ୍କର ସଂଖ୍ୟା ବ୍ରିଟେନ୍ କିମ୍ବା ଫ୍ରାନ୍ସର ମୋଟ ଜନସଂଖ୍ୟା ଠାରୁ ଅଧିକ । ଇଟାଲିର ଉତ୍ତର ଓ ଦକ୍ଷିଣ ପ୍ରଦେଶରେ ପ୍ରାୟ ଶତକଡ଼ା ୪୦ ଭାଗ ଶିଶୁ ପ୍ରାଥମିକ ଶିକ୍ଷା ଶେଷକରି ପାରନ୍ତି ନାହିଁ ଏବଂ ପେଟର କ୍ଷୁଧା ମେଣ୍ଟାଇବା ପାଇଁ ୮ରୁ ୧୪ ବର୍ଷ ବୟସର ଅନ୍ୟୁନ ୫ଲକ୍ଷ ଶିଶୁ ଦିନକୁ ୧୦ ଘଣ୍ଟାରୁ ୧୨ ଘଣ୍ଟା ଯାଏ କାମ କରନ୍ତି ।

ଭାରତରେ କମ୍‌ସେ କମ୍ ୮୦ ଭାଗ ଶିଶୁ ପ୍ରାଥମିକ ଶିକ୍ଷା ଶେଷ କରିପାରନ୍ତି ନାହିଁ କିମ୍ବା ପାଇବାରୁ ବଞ୍ଚିତ । ଅସ୍ୱାସ୍ଥ୍ୟକର ପରିବେଶରେ ଭୋକ ଦୁଃଖରେ ସଢ଼ି ପଚି

ଯାଆନ୍ତି । ସେମାନଙ୍କର ବାଲ୍ୟାବସ୍ଥାର ସର୍ବନାଶ ଘଟେ । ଭାରତ ସମେତ ଏସିଆ, ମଧ୍ୟପ୍ରାଚ୍ୟ ଓ ଲାଟିନ୍ ଆମେରିକାର ବହୁ ଦେଶରେ ଏପରିକି ସାତ, ଆଠ ବର୍ଷର ଶିଶୁମାନେ ନିଜ ନିଜର ଭରଣ ପୋଷଣ ପାଇଁ ଘରୋଇ ପାରିବାରିକ କାର୍ଯ୍ୟରେ ଦିନରାତି ଖଟୁଥାନ୍ତି । ଘରଦ୍ୱାର ସଫା କରିବା, ଅଇଁଠା ବାସନ ଧୋଇବା, ପିଲାମାନଙ୍କର ମଳ, ମୁତ୍ର, ଅପରିଷ୍କାର ଲୁଗାପଟା ସବୁ ସଫାକରିବା, ରୋଷେଇ କରିବାରେ ସାହାଯ୍ୟ କରିବା, ବାବୁ ବାବୁଆଣିଙ୍କୁ ମୋଡ଼ାଘସା କରିବା ଆଦି କାର୍ଯ୍ୟରେ ଖଟୁଥାନ୍ତି । ସେମାନଙ୍କର ଅବସ୍ଥା ଅତି କରୁଣ । କ୍ରୀତଦାସ ସୁଲଭ ଜୀବନ ଯାପନ କରୁଛନ୍ତି ।

ଆମ ଭାରତରେ ଏହି ଧରଣର ଶିଶୁ ଶ୍ରମିକଙ୍କ ସଂଖ୍ୟା ଅତି ବେଶୀ । ସାଧାରଣତଃ ସହର ଗୁଡ଼ିକରେ ଅମଲାତନ୍ତ୍ରୀ ଅଫିସର, ଇଞ୍ଜିନିୟର, ଡାକ୍ତର, ଅଧ୍ୟାପକ, ଶିକ୍ଷକ, ମାଜିଷ୍ଟ୍ରେଟ୍, ଜଜ୍ ମାନଙ୍କ ପରି ଅଧିକାଂଶ ବୁଦ୍ଧିଜୀବୀ ପରିବାରରେ, ବ୍ୟବସାୟୀ ପରିବାରଗୁଡ଼ିକରେ ଏବଂ ହୋଟେଲ୍, ରେଷ୍ଟୁରାଣ୍ଟ ଓ ଦୋକାନ ବଜାରରେ ଅଥବା ଭୋଟଜୀବୀ ରାଜନୀତିଜ୍ଞ ତଥା ଟ୍ରେଡ୍ ୟୁନିୟନ୍‌ର ନେତାମାନଙ୍କ ଘରୋଇ କାମରେ ମଧ୍ୟ ଏପରି ଅପ୍ରାପ୍ତ ବୟସ୍କ ଶିଶୁ ଶ୍ରମିକ ଦିନରାତି ଅମାନୁଷିକ ଖଟଣି ଖଟୁଥାନ୍ତି । ଶିଶୁମାନଙ୍କୁ ଖଟେଇବାର କାରଣ, ସେମାନେ ଅଳ୍ପ ଖାଆନ୍ତି, ବେଶୀ ଖଟିବାକୁ ଆପତ୍ତି କରିବାକୁ ସାହସ କରିବେ ନାହିଁ ଓ କମ୍ ମଜୁରୀରେ ଖଟିବେ । ଦାରିଦ୍ର୍ୟ ସୀମାରେଖାତଳେ ଭୋକ ଦୁଃଖରେ ମରଣ ଯାତନା ଭୋଗୁଥିବାରୁ ଏପରି ଅମାନୁଷିକ କାର୍ଯ୍ୟକୁ ଆଦରି ନେବାକୁ ଶିଶୁମାନେ ବାଧ୍ୟ ହୁଅନ୍ତି । ଦାରିଦ୍ର୍ୟର ସୁଯୋଗ ନେଇ ହୃଦୟହୀନଭାବେ ଶିଶୁ ଶ୍ରମିକମାନଙ୍କୁ ଏ ଦେଶରେ ଶୋଷଣ କରାଯାଏ । ଅନେକ ସମୟରେ ସାମାନ୍ୟ ଦୋଷତ୍ରୁଟି, ଆପତ୍ତି ଅଭିଯୋଗ ବା ଆଶଙ୍କାରେ ସେମାନଙ୍କ ଉପରେ ଶାରୀରିକ ଅତ୍ୟାଚାର ଚାଲେ । ମିଥ୍ୟା କେଶ୍ ଆରୋପ କରାଯାଇ ଜେଲଖାନାକୁ ପଠାଯାଏ ।

ସଂପୃକ୍ତ ଦେଶଗୁଡ଼ିକର ସରକାରମାନେ ଯେତେ ଜନମଙ୍ଗଳ ଓ ଗଣତନ୍ତ୍ରର କଥା କହୁଥିଲେ ମଧ୍ୟ ଏହି ଅବସ୍ଥାରେ ସେମାନେ ନୀରବଦର୍ଶକ ସାଜିଥାନ୍ତି । ସେମାନେ ବିପୁଳ ପରିମାଣରେ ପ୍ରତିରକ୍ଷା ଖର୍ଚ୍ଚ କରନ୍ତି । ପୋଲିସ୍ ଓ ସାମରିକ କାର୍ଯ୍ୟରେ ତଥା ଦେଶବାସୀଙ୍କ ବିରୁଦ୍ଧରେ ଗୁପ୍ତଚର ବୃତ୍ତି କରିବାରେ ଦେଶବାସୀଙ୍କ ଉପରେ ଟିକସ ବସାଇ ଯଥେଷ୍ଟ ଖର୍ଚ୍ଚ କରନ୍ତି । ମାତ୍ର ଶିଶୁ ଶ୍ରମିକମାନଙ୍କର ସ୍ୱାର୍ଥରକ୍ଷା କରିବାରେ ସମ୍ପୂର୍ଣ୍ଣ ଉଦାସୀନ ।

ହିସାବରୁ ପ୍ରକାଶ, ସାମ୍ରାଜ୍ୟବାଦୀ ଓ ସାମାଜିକ ସାମ୍ରାଜ୍ୟବାଦୀମାନେ ଉତ୍ପାଦନ କରୁଥିବା ଆଧୁନିକ ପ୍ରତିରକ୍ଷା ପାଇଁ ଆବଶ୍ୟକ ଗୋଟିଏ ସୁଦୂରଗାମୀ ଶବ୍ଦାତିକ୍ରମୀ ବୋମାବର୍ଷୀ ବିମାନର ଯେତିକି ମୂଲ୍ୟ, ସେହି ମୂଲ୍ୟରେ ୨ ଲକ୍ଷ ୫୦ ହଜାର ଶିକ୍ଷକଙ୍କର ବର୍ଷସାରା ଦରମା ଦିଆଯାଇପାରନ୍ତା । ଆହୁରି ପ୍ରକାଶ, ବର୍ତ୍ତମାନ ବିଶ୍ୱରେ ମାରଣାସ୍ତ୍ର, ଯୁଦ୍ଧାସ୍ତ୍ର ଉତ୍ପାଦନରେ ବାର୍ଷିକ ୩ ଲକ୍ଷ କୋଟି ଟଙ୍କା ଖର୍ଚ୍ଚ ହେଉଛି । ଏହା ଜାତିସଂଘର ସେକ୍ରେଟାରୀ ଜେନେରାଲ ୱାଲଡହାଇମ୍ ସ୍ୱୀକାର କରିଛନ୍ତି । ଅର୍ଥାତ୍ କେବଳ ମାରଣାସ୍ତ୍ର

ଉତ୍ପାଦନରେ ଯେତିକି ଖର୍ଚ୍ଚ ହେଉଛି ତାହା ପ୍ରତ୍ୟେକ ଶିଶୁର ମୁଣ୍ଡ ପିଛା ୨୦୦୦ ଟଙ୍କା ସଙ୍ଗେ ସମାନ । ଆମର ବିକାଶମୁଖୀ ଦେଶଗୁଡ଼ିକ ବୋମାବର୍ଷୀ ବିମାନ କିଣିବା ପାଇଁ ଖୁବ୍ ଗୁରୁତ୍ୱ ଦେଉଥିବା ବେଳେ ଶିଶୁମାନଙ୍କର ଶିକ୍ଷାକୁ ଅକ୍ଷମଣୀୟଭାବେ ଅବହେଳା କରନ୍ତି । ମାରଣାସ୍ତ୍ର ଉତ୍ପାଦନ ଓ ଖର୍ଦ୍ଦି ବିକ୍ରୀରେ ଯେତେ ଟଙ୍କା ଖର୍ଚ୍ଚ ହେଉଛି ସେଥିରେ କେତେ ସ୍କୁଲ୍, କଲେଜ, ଡାକ୍ତରଖାନା ଖୋଲାଯାଇପାରନ୍ତା, କେତେ ଶିଶୁଙ୍କର ଖାଦ୍ୟ ସଂସ୍ଥାନ କରାଯାଇ ପାରନ୍ତା, ତାହା ଅନୁମାନ କରିବା ଅସମ୍ଭବ ନୁହେଁ । ଏହି ସବୁ ଦୃଷ୍ଟିରୁ, ଶିଶୁମାନଙ୍କର ସମସ୍ୟା ଗୁଡ଼ିକ ପ୍ରତିରକ୍ଷା ଖର୍ଚ୍ଚ, ଯୁଦ୍ଧାସ୍ତ୍ର କ୍ରୟ ଓ ପୋଲିସ, ମିଲିଟାରୀ ଖର୍ଚ୍ଚ ପାଖରେ ସମ୍ପୂର୍ଣ୍ଣରୂପେ ଭାରସାମ୍ୟ ହରାଇଥାଏ ।

ଜାତିସଂଘ ଦ୍ୱାରା "ଶିଶୁ ଅଧିକାର" ଘୋଷଣାନାମା ଗୃହୀତ ହେବାର ବିଂଶ ବାର୍ଷିକୀ ଚଳିତ ୧୯୭୯ ଆନ୍ତର୍ଜାତିକ ଶିଶୁ ବର୍ଷ ରୂପେ ପାଳନ କରାଯାଉଛି । ଯେଉଁମାନେ ଆମର ଭବିଷ୍ୟତ ମାନଙ୍କ ପାଇଁ ଉଦ୍‌ବେଗ ପ୍ରକାଶ କରନ୍ତି ସେମାନେ ଶିଶୁ ଅଧିକାର ହାସଲ କରିବାପାଇଁ ସଂଗ୍ରାମ ଚଳାଇବା ବ୍ୟତୀତ ଅନ୍ୟପନ୍ଥା ନାହିଁ । ନୀରବ ରହିବା ହେବ ଅକ୍ଷମଣୀୟ ଅପରାଧ ।

ଶିଶୁମାନେ ବାସ୍ତବରେ ହେଉଛନ୍ତି ଭବିଷ୍ୟତ । ସେ ଭବିଷ୍ୟତର ଅଗ୍ରଗତି ଏ ପିଢ଼ୀ ଉପରେ ନିର୍ଭର କରେ । ଶାନ୍ତି, ସୁଖ ଓ ମୁକ୍ତିର ସୂର୍ଯ୍ୟ ନିଶ୍ଚିତଭାବେ ଅଜ୍ଞାନ ଅନ୍ଧକାରରେ ଓ ଭୋକ ଦୁଃଖରେ ସଢୁଥିବା ଶିଶୁମାନଙ୍କ ସାମନାରେ ଉଦୟ ହେବନିହିଁ ହେବ ।

ଏବର୍ଷ ଆରମ୍ଭରୁ ଆମ ସରକାର ଆନ୍ତର୍ଜାତିକ ଶିଶୁ ବର୍ଷ ଉପଲକ୍ଷେ ସରକାରୀ ସ୍ତରରେ ବହୁ ସଭାସମିତି କରାଇଛନ୍ତି । ନେତାମାନେ ବହୁ ଭାଷଣ ଦେଲେଣି । ବାସ୍ତବ ଅବସ୍ଥାରେ କୌଣସି ଆମୂଳ ପରିବର୍ତ୍ତନର ଆଭାସ ନଥାଇ କେବଳ କୁମ୍ଭୀର କାନ୍ଦଣା ହେଉଛି । ଶିଶୁମାନଙ୍କ ନାମରେ ଶିଶୁମାନଙ୍କର ମୌଳିକ ସମସ୍ୟା ପ୍ରତି ବିଶ୍ୱାସଘାତକତା କରାଯାଉଛି । ଶିଶୁମାନଙ୍କ ପ୍ରତି କି ପ୍ରକାର ଆଭିମୁଖ୍ୟ ଓ ମନୋଭାବ ଗ୍ରହଣ କରାଯାଏ, ସେଥିରୁ ଗୋଟିଏ ରାଷ୍ଟ୍ରର ଚରିତ୍ର ଓ ଗୋଟିଏ ସମାଜର ଚ଼ରିତ୍ର ପ୍ରକାଶପାଏ । ଏ ଦୃଷ୍ଟିରୁ ଯେ ପର୍ଯ୍ୟନ୍ତ ଆମଦେଶରେ ବ୍ୟାପକ ଜନସାଧାରଣଙ୍କ ଉପରେ ସାମ୍ରାଜ୍ୟବାଦ, ସାମାଜିକ-ସାମ୍ରାଜ୍ୟବାଦ, ଦଲାଲ ପୁଞ୍ଜିବାଦ ଓ ସାମନ୍ତବାଦର ଶୋଷଣ, ଲୁଣ୍ଠନ, ଆଧିପତ୍ୟ ଜାରି ରହିଥିବ, ସେପର୍ଯ୍ୟନ୍ତ ଆମ ଶିଶୁମାନେ ସେମାନଙ୍କର ନ୍ୟାଯ୍ୟ ଅଧିକାର ଓ ସୁଯୋଗ ପାଇବାରୁ ବଞ୍ଚିତ ହେବାକୁ ବାଧ୍ୟ । ଶିଶୁମାନଙ୍କର ଅଧିକାର ହାସଲ ହେବାକୁ ହେଲେ, ଏହି ଚାରି ଶୋଷଣ ଶ୍ରେଣୀ ବିରୁଦ୍ଧରେ ବିପ୍ଳବୀ ଆନ୍ଦୋଳନ ଗଢ଼ିତୋଳିବା ଅପରିହାର୍ଯ୍ୟ ।

'ବିପ୍ଳବ ସନ୍ଦେଶ'
ସେପ୍ଟେମ୍ବର ୧୯୭୯



# Farewell to Alcohol: Fourteen years with Country Liquor

**Baikuntha Biswal**

Honourable President, Respected Guests, Organisers of this seminar and Friends!

First of all, I express my gratitude to the organisers of this seminar in general and to CYSD and Sahara in particular and personally to Dr. Binod Pattanaik, a highly learned psychiatrist working in Sahara, who have given me this precious opportunity to narrate my various experiences concerning my acute addiction to alcohol for the last fourteen years, i.e, from 1978 to 1992.

It should have been better on my part to speak here in Oriya, my mother tongue, as one can express oneself best in one's mother tongue only. But because Dr. Pattnaik informed me that some non-Oriya gentlemen who are experts in the field of drug counseling are attending this seminar, I thought it wise to speak in English. I also decided to write down quite non-formally my experiences and read the same here purely for my future benefit.

Mark Twain once said, "Experience teaches us that experience teaches us nothing." Might be he said it out of his sense of super intellectual humour. But the latent contents of his words are more than their worth and it is specially so in case of almost all the drug addicts, not to speak of alcoholists alone. During the last fourteen years, I have observed that all the alcohol addicts, not excluding myself, quite often, and more so at the time of consuming alcohol, realize and say that they are doing serious injustice to themselves, to their families and to the society at large by their alcoholism. But again, a few days or even a few hours after, they come back to the wine shop, bar or country liquor shop and repeat the same. Of course, they alone should not be blamed for this. The root causes of their frustration or depression, spreading of liquor-selling shops by the government and their ignorance that they can be de-addicted by their personal determination, and sincere and whole-hearted counseling by experts followed by medical treatment etc. are primarily responsible for this sorrowful situation. Sirs and Madams, please excuse my uttering about

the activities of the government because it is not a political symposium. But I am undone to say so. Contrary to the preaching of our ancestors and enlightened persons and contrary to the Directive Principles of State Policy contained in Chapter-IV of our Constitution, our government has not yet enacted any law for total prohibition except on the day of Gandhi Jayanti only. On the contrary, the governments have been seriously encouraging alcoholism by issuing more and more licenses every year for opening liquor shops. Any way, I do not like to go far in this matter and kill your precious time here.

It is exactly not a piece of memoirs. But I will narrate very briefly my personal background, the start and development of addiction, my experience about myself and other alcohol addicts whom I have come across, my sufferings due to addiction and the process through which I have been able to get rid of it and some other things I may deem fit to express.

I was born in a lower-middle class peasant-cum-small contractor's family as the only surviving issue of my parents. Naturally, I got much love and affection as well as care from my parents. Socially I was a good boy with good sense personal and social morality. Incidentally I was a good student in my school, college and university career. During my student career, I had never taken alcohol. My addictions were only to tea and betel, which we call 'pan' here. Of course, I had to face severe financial problems towards the end of my student career as my father retired from his small business absolutely without any savings. However, my studentship ended in 1973 at Delhi School of Economics, when I did my post graduation in Economics. Then I worked as a teacher in a central university for a few months, but left that job for some family reasons and entered into journalism in which field I had absolutely no academic qualifications. Till then I had not touched alcohol. Even when I attended luxurious press conferences organised by the Government or foreign Embassies where alcohol was invariably served as water is served in our social functions, I never took it to the utter astonishment of my fellow journalists. But during my three years' professional career in journalism in Delhi, I had taken alcohol of whisky variety with my friends some three to four times only, and that too at my residence which you may call social drinking. However, during the said period alcohol had practically got no attraction for me. After working for some nationally reputed English Dailies, published from Delhi and Chandigarh, I joined as a project director of a private business institution and remained in-charge of its

research wing conducting non-academic researches in socio-economic political matters with inter-disciplinary approach. Till then, my parents were alive and, although unmarried, I had got love from a girl who was my classmate from high school till graduation. That benevolent lady became my socially and lawfully married wife in 1975. Prior to that year till now she has been working as a high school teacher and staying far away from me except during school vacations and some other occasions. A very few days, not months, prior to my marriage, my real mental tension and frustration began. I had completed my first research assignment as its author and it was in print. It was to be published and released by the same institution in July-August 1975. Prior to its publication (and it is not yet published) that book of mine was highly advertised in various newspapers and journals. I was getting good salary and perks from that institution. But as the author of that book, I was also to get a handsome amount as royalty immediately after its publication. So, naturally, very happily, I came to my native place for my marriage, which was ceromonised and socialized with big obstacles, as it was an inter-caste marriage. Any way that was not a problem for me because I had foreseen the same completely. Only two days after the day we and my close friends in Orissa fixed the date of marriage, the Government of India promulgated Situation of Emergency. My problems started there. During my student career, I was politically very active and was a well-known student leader of Orissa. But very openly I was an ardent supporter of a political party formed at that time under the name and style of C.P.I. (M-L) whose activists and supporters were called Naxalites. Not incidentally, the book written by me which was to be published was also mainly on the subject of Naxalism. When a few days after my marriage, I returned to Delhi, I immediately learnt that my manuscript along with all the printed pages (Printing work was not completed) was seized by the police. Then I went to the office where I was working and learnt that the managing director of the company was lodged in Jail under some clauses of Emergency laws. I had been provided with a good accommodation in a portion of that office building where I used to keep some belongings of mine. I went there and found that my belongings (among them, there was no precious one except a type written copy of the said manuscript) were also seized and taken away by the police. I contacted lawyers who advised me not to move to the court of law on this issue, as it will not be fruitful on any account. Then I met my employer at the jail and handed over my resignation letter against his will and came back to my native state.

Frustration developed day by day. Although slowly, but I tried to rationalize the whole episode. As Abnormal Psychology was one of the subjects in my intermediate course, I could be successful to some extent. But I did not resort to any drug despite this frustration and financial strain. In June 1976, without any funds I decided to bring out and edit a small newspaper, preferably in English, from Orissa and returned to Delhi to consult my journalist friends there, including Mr. B.G. Verghese who at that time was thrown away from his post of the Chief Editor of the daily the Hindustan Times published by the Birla Group. Just a few days prior to that, he had been awarded the Magasayse award, which is considered as Asia's Nobel Prize. We prepared the scheme of the proposed daily and I returned to my village via Rourkela where I met a gentleman whose name I had heard but never met before hand. At that time, he was one of the renowned contractors of Orissa and prior to that he was a militant trade unionist. He, without being asked for any help, offered and assured me that he would to finance my small project fully without any return and without the knowledge of his family and the society. Quite naturally I became cheerful, came and stayed at Bhubaneswar with a friend of mine and started to give shape to my ideas. It is here that I learnt that some government-owned institutions are financing industrial projects including printing presses. I decided to go for it in order to lessen my burden on my financier. Accordingly, I prepared the papers and the documents and moved to Orissa State Financial Corporation for a loan of Rs. 85,000 only. I sincerely estimated the amount without any motive to cheat the government-owned corporation. Yes, as I thought it would take at least one year's time to complete the project and bring out the proposed English daily, I decided to bring out at an early day, a weekly tabloid in Oriya which would also work as the groundwork for the proposed Daily. Legal matters were completed, and the dummy issue (which was not for circulation) was printed. Intellectuals and newspaper agents of Orissa appreciated it. At that time, one afternoon I learnt that my would be financier died in a car accident while returning from Rourkela to Cuttack. I was shocked and remained totally idle for a month or so. Then I inspired myself and became firmly determined not to return from what I had decided to do. I arranged meager funds for my proposed weekly newspaper. Again one afternoon, while I was sitting in my room alone looking at the calendar for fixing up the date of release of the inaugural issue, I received the news of my father's death due to heart attack. I postponed my project for two to three months.

My wife and children were staying far away from me except during school vacations when they came and we stayed together either at Bhubaneswar or at my native village. Of course, for five years now, my children (not my wife) have been staying here. But one and a half years ago I made an arrangement so that my children could stay with the family of a friend of mine at Bhubaneswar. Even now they are staying there. I took this decision because owing to my chronic alcoholism I could not take care of them.

Of course, despite all these factors and despite my chronic alcoholism, my family life has been quite cordial and a happy one although my wife and children were quite unhappy for my addiction to liquor.

Now let me come to the main point. My real alcoholism started after the death of my father. I could not reconcile with his death, could not forget my memories from childhood with him, and simply lay on bed after taking alcohol and food. Of course the quantity of alcohol was small and its intake was at night time only. However, nearly after two months I stopped taking it; tried to strengthen my mind and brought a weekly Oriya tabloid, which was the first of its kind here in Orissa and in Oriya language. During the period of publication of the said newsweekly, I used to drink every Sunday night after the printing work was completed. Although the said venture gave me satisfaction and the paper was highly appreciated by readers, it lasted only for five months, and died an untimely death purely for financial reasons. At that point I failed to find out any way for myself. But long beforehand, I had decided not to serve under the government due to my ideological convictions. Then I started drinking twice a day, i.e. in the noon and at night. The quantity of intake gradually increased. A regular drinker without any income cannot afford what is called foreign liquor. So I decided to take country liquor. Of course I used to take country liquor manufactured by the government. But sometimes I also took locally manufactured country liquor, which although more harmful to body, is cheaper and more intoxicant.

Not due to my negligence or alcoholism, my loan application with the government-owned financial institution took full four years to be disposed. And in 1980, the amount sanctioned by that institution was one-third of the amount I had applied for. Prices of machinery, tools etc. had in the meanwhile increased by more than one hundred percent. Yet, I remained courageous, and successfully, although with

much bureaucratic hazards, established my printing unit in a precious factory-shed at a local industrial estate. Outwardly people knew that I have become a "factory owner", but practically I was and I am yet poorer than a street-side betel shopkeeper as my net income has been till date in the negative. Yes, I should also say that no friend of mine is responsible for my chronic alcoholism. Although my close friends, most of whom are well educated and well placed, accompany me to country-liquor shop at times, they rarely touch that liquid. My printing press ran in loss, which furthered my addiction. Still I was active and to some extent smart also, although I had already become a victim of depression, which I understood too late. In the first part of 1983, I had to be involved in litigations for no fault of mine so far as my knowledge and belief are concerned. Being too much disgusted, I closed down my printing press- the so called "factory" and stayed in my village with my mother and at some other places with my friends and also with my wife at her place of work, for two complete years. During that period, my alcoholic intake was heavily reduced owing to non-availability of liquor in my village and the locality. But depression and tension were too severe. Afterthoughts often occurred to my mind, which I consciously tried to rationalize. Again towards the end of 1985, I returned to Bhubaneswar as the Editor of a very good news weekly started by some friends of mine. I was not exactly an employee there. But that paper also lasted for a few months only. Yes, I forgot to say an important thing. A change occurred to me in between 1978 and 1980. I started believing in some external power and studied our ancient scriptures mostly of Vedanta and Yoga varieties. I tried to practice meditation, came in contact with some saints. But I could not and did not wish to leave alcohol. Tension in mind was so heavy that I often failed to perform a single minute's meditation.

Towards the end of 1985, I regained strength and tried to revive my dead printing press and became successful again despite much bureaucratic hazards. But that success was too temporary and lasted just for one and a half months when again my industrial unit had to be closed owing to absolutely no fault of mine. I was compelled to move to the High Court where I won without any difficulty. Then I re-started my printing press. But just a few months thereafter, my mother suddenly died. Although she was more than seventy, I failed to accept that reality and always remained in tension. From the very date of my mother's death, I started consuming country liquor at least twice a day. The quantity became almost four times of what it was in 1978. From June

1987, i.e. from my mother's death till early 1989, I was never in a position to do any work or to exercise my mind except remembering my mother and consuming more and more liquor. But in March 1989, I could somehow came to a position to work and became determined to start my press again and bring out a small language daily newspaper and could be successful within a few months. Although the said newspaper is still alive in spite of all sorts of financial and other hazards, I had to face and I have been facing severe problems prior to starting this newspaper and for the first time in my "career" in alcoholism, I decided to give it up. I contacted a very close doctor friend of mine who was then working as a medicine specialist in a government hospital at Bhubaneswar. He came to my help, gave me suitable suggestions, provided me with costly medicines, met me at least twice a week and the quantity and frequency of my drinking started reducing . In this matter one of my younger cousins, who was then a doctor in a government hospital and is now a psychiatrist, also helped me too much directly and indirectly through that doctor friend of mine. I could give up consumption, but just for a few days. The urge for liquor was consciously there with me. Again it revived. Between 1989 and 1992, I left alcohol four times, but never for more than a fortnight and that too by taking powerful tranquilisers like Nitrosun, Antipan, etc. at least 20 to 30 mg a day.

[ This is the text of a presentation made in a seminar on alcoholism organised by Sahara and CYSD, Bhubaneswar in 1993. The rough copy of this was found in late Sri Baikuntha Biswal's briefcase]



# ଏକ ନିବେଦନ

ବୈକୁଣ୍ଠ ବିଶ୍ୱାଳଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା ଅନୁଷ୍ଠାନ Council of Ability Research and Generation ଏବେ ଧିରେ ଧିରେ କାର୍ଯ୍ୟକ୍ଷମ ହେବାକୁ ଆରମ୍ଭ କରିଛି । କାମ ଆରମ୍ଭ କରିବାକୁ ଯାଇ ଆମେ ପ୍ରଥମେ ପୁସ୍ତକ ପ୍ରକାଶନ କାର୍ଯ୍ୟ ହାତକୁ ନେଇଛୁ । ଚିନ୍ତା ଓ ଚେତନା ସମ୍ବଳିତ ଶିକ୍ଷା ଧର୍ମୀ ପୁସ୍ତକ ଓ ଶିଶୁ କିଶୋର ସାହିତ୍ୟ ପୁସ୍ତକ ପ୍ରକାଶିତ ହୋଇଛି । ଆଗକୁ ଆହୁରି ପ୍ରକାଶନର ଯୋଜନା ଅଛି । ଏହି ମର୍ମରେ ଆମେ ବୈକୁଣ୍ଠ ବିଶ୍ୱାଳଙ୍କ ଲେଖାଗୁଡ଼ିକୁ ନେଇ ଏକ ସଂକଳନ ପ୍ରକାଶ କରିବାକୁ ସ୍ଥିର କରିଛୁ । ତାଙ୍କର ଲେଖାଗୁଡ଼ିକ "ଲୋକାଗ୍ରର", "ନବପ୍ରଭାତ", "ବର୍ତ୍ତମାନ ପରିକ୍ରମା", "ପ୍ରଗତିବାଦୀ" ଆଦି ଖବର କାଗଜ; ଦି ମଦର ଲ୍ୟାଣ୍ଡ (The Motherland), ବେଳା, ଅଗ୍ନିବୀଣା, ଜ୍ୱଳନ, ବିପ୍ଳବ ସନ୍ଦେଶ, ପ୍ରତିପକ୍ଷ, ସୋସଲିଷ୍ଟ ଇଣ୍ଡିଆ (Socialist India), ୟଙ୍ଗ ଇଣ୍ଡିଆନ୍ (Young Indian) ଆଦି ପତ୍ରିକାରେ ପ୍ରକାଶିତ ହୋଇଛି । ମାତ୍ର ଦୁଃଖର କଥା ଯେ ଆମ ନିକଟରେ ତାଙ୍କର କୌଣସି ପ୍ରକାଶିତ/ଅପ୍ରକାଶିତ ଲେଖା, ଏପରିକି "ଲୋକାଗ୍ରର" ର କୌଣସି ପ୍ରକାଶିତ ସଂଖ୍ୟା ମଧ ନାହିଁ । ଯଦି କାହା ପାଖରେ ଏହିସବୁ ଲେଖା ଏଯାବତ୍ ଗଚ୍ଛିତ ଅଛି ବା କେହି କେଉଁଠି ଏହାର ସନ୍ଧାନ ପାଆନ୍ତି, ତେବେ ଆମ ପାଖକୁ ପଠାଇଲେ ବା ସୂଚନା ଦେଲେ ଆମେ କୃତଜ୍ଞ ରହିବୁ । ସଂକଳନ ପ୍ରକାଶନରେ ଏତିକି ସାହାଯ୍ୟ କରିବାକୁ ବିନମ୍ର ଅନୁରୋଧ ।

ଅଳ୍ପ ସମୟ ମଧରେ ଏହି ସ୍ମରଣିକା ପ୍ରକାଶ କରିବାକୁ ହୋଇଥିବାରୁ ବୈକୁଣ୍ଠ ବିଶ୍ୱାଳଙ୍କର ଅନେକ ବନ୍ଧୁ ଓ ଶୁଭେଚ୍ଛୁଙ୍କ ସହ ଯୋଗାଯୋଗ କରି ପାରିନାହୁଁ । ଯଦି କେହି ତାଙ୍କ ସ୍ମୃତିରେ, ନିଜ ଅନୁଭୂତି ବିଷୟରେ କିଛି ଲେଖିପାରନ୍ତି ତେବେ ତାକୁ ଆମ ନିକଟକୁ ପଠାଇଲେ ପରବର୍ତ୍ତୀ କାଳରେ ପ୍ରକାଶିତ କରି ଆମେ ଋଣୀ ରହିବୁ ।

ଆଉ ଗୋଟିଏ କଥା । ଆମ ଅନୁଷ୍ଠାନଟି ଏବେ ଭିନ୍ନ ଏକ ପରୀକ୍ଷଣର ବିଦ୍ୟାଳୟ ସ୍ଥାପନର ଲକ୍ଷ୍ୟ ରଖିଛି । ଏ ବିଦ୍ୟାଳୟଟି ପ୍ରାକ୍-ବିଦ୍ୟାଳୟ ଶ୍ରେଣୀରୁ ଆରମ୍ଭ ହେବ । ଏ ବିଦ୍ୟାଳୟ ମାଧମରେ ଆତ୍ମବିଶ୍ୱାସୀ, ମାନବପ୍ରେମୀ, ସ୍ୱାବଲମ୍ବୀ, ଜ୍ଞାନସନ୍ଧିତ୍ସୁ, ମୁକ୍ତ ଚିନ୍ତାଧାରା ଓ ଆନନ୍ଦମୟ ଜୀବନ ଜିଇଁବା ପାଇଁ ଉପଯୁକ୍ତ ମଣିଷ ଗଢ଼ିବା ଆମର ଲକ୍ଷ୍ୟ । ଆମର ବିଶ୍ୱାସ ଯେ ଏହିପରି କିଛି ପିଲାଙ୍କୁ ଗଢ଼ିପାରିଲେ ସେମାନଙ୍କ ଦ୍ୱାରା ସମାଜରେ କିଛି କିଛି ସକାରାତ୍ମକ ଉନ୍ନତି ସାଧିତ ହେବ । ଆମର ଏହି ଶିକ୍ଷା ଆନ୍ଦୋଳନରେ ସାମିଲ୍ ହେବାପାଇଁ ଆମେ ସମସ୍ତଙ୍କୁ ନିବେଦନ କରୁଛୁ ।

ଚେତନା ଓ ଚିନ୍ମୟ





...ବୈକୁଣ୍ଠ ବିଶ୍ୱାଳ ଯଦିଓ ଜଣେ ବ୍ୟକ୍ତିବିଶେଷ ମାତ୍ର, ସେ ଥିଲେ ବହୁମୁଖୀ ବିପ୍ଳବୀ ପ୍ରତିଭାର ଅଧିକାରୀ । ତାଙ୍କର କଲମ ଯେପରି ଶାଣିତ, ସେପରି ବେସାଲିସ୍ ଏବଂ ନିର୍ମମ । ତାର ପରିଚୟ ତାଙ୍କ ସଂପାଦିତ ଓ ପ୍ରକାଶିତ ସାପ୍ତାହିକ 'ଲୋକାଚାର' ପତ୍ରିକା ଯୋଉମାନେ ପଢ଼ିଥିବେ ଓ ଯାହାଙ୍କ ପାଖରେ ତାହା ଗଚ୍ଛିତ ଥିବ, ସେହିମାନେ କେବଳ ଜାଣିପାରିବେ । ବୈକୁଣ୍ଠ ବିଶ୍ୱାଳ ଥିଲେ ଗୋଟିଏ ସାମାଜିକ ବିପ୍ଳବର ସ୍ଫୁଲିଙ୍ଗ । ସେହି ସ୍ଫୁଲିଙ୍ଗ ଭିତରେ ଥିଲା ଦାବାନଳକୁ ଜନ୍ମ ଦେବାର ଏକ ପ୍ରତିବଦ୍ଧତା । ସେ ପ୍ରତିବଦ୍ଧତା ନଥିଲା ବନ୍ଧ୍ୟା; ତାର ଥିଲା ଜନସାଧାରଣଙ୍କ ଠାରୁ ଜନସାଧାରଣଙ୍କ ପର୍ଯ୍ୟନ୍ତ (From Masses to Masses) ଗମନାଗମନ ।

-ରବି ସିଂ